Mr Anil kumar Panigrahy

Wonder what her smile meant.
I'd walked up to her
and offered my pack
of fresh mint
bubble gum.
She popped
one in.
And she smiled .....

Anil Kumar Panigrahy




Was it my charm, or was it my bubble gum?




Fixy Foxy
Spearmint Bubble Gum

# ଶ୍ୱାସ ର ଦୁର୍ଗନ୍ଧ ଦୂର କରନ୍ତୁ, ଦାନ୍ତକଣା ର ପ୍ରତିରୋଧ କରନ୍ତୁ.



# କଲଗେଟ ର ସୁରକ୍ଷା-ଚକ୍ର ନଜର କରନ୍ତୁ!

କଲଗେଟରେ ନିୟମିତଭାବେ ଦାନ୍ତ ସଫା କଲେ
ଆପଣଙ୍କ ପରିବାରରେ ସମସ୍ତଙ୍କର ଶ୍ୱାସ ତାଜା ଓ ପରିଷ୍କାର ଏବଂ ଦାନ୍ତ ମଜବୁତ
ଓ ସୁସ୍ଥ ରହେ ଅର୍ଥାତ କଲଗେଟର ସୁରକ୍ଷା ମିଳେ ।

ଏଇ ଦେଖନ୍ତୁ କଲଗେଟର ନିର୍ଭରଯୋଗୀ ଫର୍ମୁଲ
କିପରି ଆପଣଙ୍କ ଦାନ୍ତର ସୁରକ୍ଷା କରେ :



ଦାନ୍ତ ସନ୍ଧିରେ ରହିଯାଇଥିବା ଖାଦ୍ୟକଣା
ଦ୍ୱାରା ଶ୍ୱାସରେ ଦୁର୍ଗନ୍ଧ ଓ ଦାନ୍ତ କଣା
କରୁଥିବା ଜୀବାଣୁ ବଢନ୍ତି ।



କଲଗେଟର ଅପୂର୍ବ ପ୍ରକ୍ଷାଳନୀ ଫେଣ
ଦାନ୍ତ ସନ୍ଧିରେ ଲୁଚିଛପି ରହିଥିବା ଖାଦ୍ୟକଣା
ଓ ଜୀବାଣୁଙ୍କୁ ବାହାର କରିଦିଏ ।



କଲଗେଟରେ ନିୟମିତଭାବେ ଦାନ୍ତ ସଫା
କଲେ ଶ୍ୱାସ ତାଜା ଓ ପରିଷ୍କାର ଏବଂ
ଦାନ୍ତ ମଜବୁତ ଓ ସୁସ୍ଥ ରହେ ।

ମନେ ରଖନ୍ତୁ ଆପଣଙ୍କ ପରିବାରର ସମସ୍ତେ ଯେପରି ପ୍ରତିଥର
ଖାଇବା ପରେ କଲଗେଟରେ ଦାନ୍ତ ସଫା କରିବାକୁ ନ ଭୁଲନ୍ତି ।
ଶ୍ୱାସର ଦୁର୍ଗନ୍ଧ ଦୂର କରନ୍ତୁ,
ଦାନ୍ତକଣାର ପ୍ରତିରୋଧ କରନ୍ତୁ।




ଏହାର ତାଜା ପିପରମେଣ୍ଟ

# ଜହ୍ନମାମୁଁ

ସମ୍ପାଦକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଅଗଷ୍ଟ ପନ୍ଦର ଭାରତର ମୁକ୍ତି ଦିବସ । ଏହା ମଧ୍ୟ ମହାନ୍ ଋଷି ଶ୍ରୀଅରବିନ୍ଦଙ୍କ ଜନ୍ମ ଦିନ । ମାନବ ସମାଜ ଦିନେ ଏବର ଅଜ୍ଞାନ ଅବସ୍ଥାରୁ ମୁକ୍ତି ପାଇ ବିବର୍ତ୍ତନର ଆଭିମୁଖ୍ୟକୁ ସାର୍ଥକ କରିବ, ସେ ଏ ଆଶା ରଖି ଯାଇଛନ୍ତି । ଆଜି ସେହି ମୁକ୍ତି ପାଇଁ ଅଭିପ୍‌ସା ପୋଷଣ କରିବା ଆସନ୍ତୁ ।

## ଅମରବାଣୀ

ଧନାନି ଜୀବିତଂ ଚୈବ ପରାର୍ଥେ ପ୍ରାଜ୍ଞ ଉତ୍ସୃଜେତ୍ ।
ସନ୍ନିମିତ୍ତେ ବରଂ ତ୍ୟାଗୋ, ବିନାଶେ ନିୟତେ ସତି ॥

[ଯେଉଁ ଧନ ଓ ଜୀବନର ବିନାଶ ନିଶ୍ଚିତ, ତାକୁ ଆବଶ୍ୟକ ସ୍ଥଳେ ଅନ୍ୟର ହିତ ପାଇଁ ବିସର୍ଜନ ଦେବାକୁ ଜ୍ଞାନୀ ଲୋକେ କେବେ କୁଣ୍ଠିତ ହୁଅନ୍ତି ନାହିଁ ।]

ବର୍ଷ : ୨୦ ଅଗଷ୍ଟ ୧୯୮୨ ଅଙ୍କ : ୨

ପ୍ରତି ସଂଖ୍ୟା : ଟ. ୨-୫୦ :: ବାର୍ଷିକ ମୂଲ୍ୟ : ଟ. ୩୦-୦୦

CHANDAMAMA PUBLICATION



ରବି ଅତି ଗୁଲାଜ ପିଲ, ସିଏ ସବୁରି ଗେଲା

କମିକ୍ ସବୁ ପଢ଼ିସାରିଲାଣି ଖେଳଟେଳଣା ପୁରୁଣା ହେଲା॥

ନିତି ନିତି ନୂଆ ମଜା କିଏଇ ଦବ ଭଲା

ହେଜି, ପାଇଁ ସ୍ଥିର କଲା, ନିଜ ବାକ୍ସ ଦରାଣ୍ଡିଲା ॥

ଏକୋ ପେନ ସେଟ୍ କାଢ଼ି, ଆଣିଲା କାଗଜ

ଲାଗିଯୁ ପକ୍ଷୀ ମୟୂର ଆଙ୍କି, ଛବି କଲା ସଜଜ ।

ଟିଙ୍କାନ ସ୍କୁଟର ସୁତ ସିଏ, କାଲ ରକେଟ, ଉଡ଼ାଯାହାଜ

ନିଜ ନୂଆ ଭିଆଣ ଦେଖି, ଧରେ ନାହିଁ ଧୈର୍ଯ୍ୟ ॥

ଏଲେ ଅତି ଉପଯୋଗୀ, ଶାଗୁଆ, ନେଳିଆ

ବାଦାମୀ, ହଳଦି ସୁନ୍ଦି ପାଟଳ, ନାଲିଆ ।

ଭାଓଲେଟ୍, ବାଇଗଣି ଆଉ ନାରଙ୍ଗି, କାଳିଆ

ତମ ଲାଗି ପ୍ରତି ସେଟ୍ ଯେ ଦଶ ରଙ୍ଗିଆ ॥



## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ନୂତନ ତାଜମହଲ

ଡୋନାଲ୍ଡ୍ ସୋଲ୍ଡିନ ନାମକ ଆମେରିକାନ୍ ଭଦ୍ରଲୋକ ଫ୍ଲୋରିଡ଼ାରେ ଭାରତର ବିଖ୍ୟାତ ଇମାରତ୍ ତାଜମହଲର ଗୋଟିଏ ଅବିକଳ ନକଲ ନିର୍ମାଣ କରିବାକୁ ପ୍ରଚୁର ଅର୍ଥର ବ୍ୟବସ୍ଥା କରିଛନ୍ତି । ତାଙ୍କ କହିବାର କଥା, ସେ ଅପୂର୍ବ ଇମାରତର ସୌନ୍ଦର୍ଯ୍ୟ ଅଧିକ ସଂଖ୍ୟକ ଆମେରିକାନ୍ ଉପଭୋଗ କରିବାର ସୁଯୋଗ ପାଇବେ ।

### ପିରାମିଡ୍ ଯୁଗର ପବନ

ଇଜିପ୍ଟର ପିରାମିଡ୍ ତଳେ ଗୃହଜାର ଛଅଶହ ବର୍ଷ ତଳର ପବନ ଅବରୁଦ୍ଧ ରହିଛି । ବୈଜ୍ଞାନିକମାନେ ବର୍ତ୍ତମାନ ସେ ପବନକୁ ବୋତଲରେ ରଖି ତାହାକୁ ବିଶ୍ଳେଷଣ କରି ସେ ଯୁଗର ବାତାବରଣ ସମ୍ପର୍କରେ ତଥା ପ୍ରାଚୀନ ମିଶରୀୟମାନେ କିପରି ମୃତ ଦେହ ସାଇତି ରଖୁଥିଲେ, ସେ ବିଷୟରେ ତଥ୍ୟ ସଂଗ୍ରହ କରିବାକୁ ଉଦ୍ୟତ ।





### କେବଳ ମହିଳାଙ୍କ ପାଇଁ

ସୌଦି ଆରବରେ ଏପରି ଗୋଟିଏ କାରଖାନା ଅଛି ଯେଉଁ ଅନୁଷ୍ଠାନରେ କି ଚପରାଶିଠୁଁ ସର୍ବୋଚ୍ଚ ହାକିମଯାଏ ସମସ୍ତେ ମହିଳା । କାରଣ ସେ ଦେଶରେ ପୁରୁଷ ଓ ମହିଳା ଏକତ୍ର କାମଦାମ କରିବା ମନା ।

## ଜାଣନ୍ତି କି ?

୧. ପାକ୍ଷିକ ତଥା ମାସିକ ରୂପେ ଅର୍ଦ୍ଧଶତାବ୍ଦୀ ଧରି ପ୍ରକାଶ ପାଉଥିବା ସାହିତ୍ୟ, ସଙ୍ଗୀତ ଓ ବ୍ୟଙ୍ଗ ସମନ୍ୱିତ ଓଡ଼ିଆ ପତ୍ରିକା କିଏ ?

୨. ସିପାହି ବିଦ୍ରୋହ କାଳରେ ଇଂରେଜମାନଙ୍କ ସହ ଲଢ଼ି ଦ୍ୱୀପାନ୍ତରିତ ହୋଇଥିବା ଓଡ଼ିଆ ଜମିଦାର କିଏ ?

୩. ଓଡ଼ିଆ ଭାଷାରେ ଓଡ଼ିଶାର ପ୍ରଥମ ପ୍ରାମାଣ୍ୟ ଓ ବିଶଦ ଇତିହାସର ପ୍ରଣେତା କିଏ ?

୪. ପ୍ରାଚୀନ କଳିଙ୍ଗର ତାମ୍ରଲିପ୍ତ ବନ୍ଦର କେଉଁଠାରେ ଥିଲା ?

(୭୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

# କାର୍ତ୍ତବୀର୍ଯ୍ୟ

ନର୍ମଦା ତୀରରେ ମହିଷ୍ମତୀ ନଗରୀ ଥିଲା କାର୍ତ୍ତିବୀର୍ଯ୍ୟର ରାଜଧାନୀ । ନିଜ ବାହୁ ଦ୍ୱାରା ସେ ତ୍ରିଭୁବନ ବିଜୟ କରିବ ଓ ସବୁଠାରୁ ବଳବାନ ବୋଲାଇବ ।

ଋଷି ଦତ୍ତାତ୍ରେୟଙ୍କ ବର ଦ୍ୱାରା ସେ ସହସ୍ର ବାହୁର ଅଧିକାରୀ ହେଲା । ଦିନେ ନଦୀରେ ସ୍ନାନ କଲାବେଳେ ସେ ଭାବିଲା, "ମୋ ବାହୁ ସମୂହ ଦ୍ୱାରା ମୁଁ ସ୍ରୋତ ରୋକି ପାରିବି ନା ନାହିଁ ?" ସେ ଚେଷ୍ଟା କଲା ଓ ସଫଳ ହେଲା ।

କିଛି ଦୂରରେ ରାବଣ କୌଣସି ଅଭିଯାନ ପରେ ଲଙ୍କା ଫେରିବା ବାଟରେ ନଈ କୂଳରେ ଛାଉଣି ପକାଇଥିଲା । ଏଣେ ନଦୀ ସ୍ରୋତ ବନ୍ଦ ହେବାରୁ ତେଣେ ନଈ ଉଚ୍ଛୁଳି ତା' ଛାଉଣି ଭାସିଗଲା । ରାବଣ ବିରକ୍ତ ହୋଇ ଏପରି ହେବାର କାରଣ ଖୋଜିବାକୁ ଯାଇ କାର୍ତ୍ତିବୀର୍ଯ୍ୟକୁ ଠାବ କଲା । ଦୁହିଁଙ୍କ ଭିତରେ ଝଗଡ଼ା କ୍ରମେ ଯୁଦ୍ଧରେ ପରିଣତ ହେଲା । କାର୍ତ୍ତିବୀର୍ଯ୍ୟ ତା' ସହସ୍ର ବାହୁ ଦ୍ୱାରା ରାବଣକୁ କାବୁ କରିନେଲା । ପରେ ଦୁହେଁ ବନ୍ଧୁ ହେଲେ ।

କ୍ରମେ କାର୍ତ୍ତିବୀର୍ଯ୍ୟ ଅଧିକ ଉଦ୍ଧତ ହୋଇ ଦିନେ ଗୋଟିଏ ବଣରେ ନିଆଁ ଲଗାଇ ଦେଲା । ସେ ବଣରେ ଥିବା ଋଷି ଅପବ ତାକୁ ଅଭିଶାପ ଦେଲେ, "ତୋର ସହସ୍ର ହାତ ଯିବ !" ଏହା ପରେ ପରେ ଦିନେ ଋଷି ଜମଦଗ୍ନିଙ୍କଠୁଁ କାମଧେନୁ ଅପହରଣ କରିନେବାକୁ ଉଦ୍ୟମ କରି କାର୍ତ୍ତିବୀର୍ଯ୍ୟ ଋଷିଙ୍କୁ ମାରି ପକାଇଲା । ଫଳରେ ସେ ଜମଦଗ୍ନିଙ୍କ ବିଖ୍ୟାତ ପୁତ୍ର ପରଶୁରାମଙ୍କ କ୍ରୋଧର ଶିକାର ହେଲା । ପରଶୁରାମ ପ୍ରଥମେ ତା'ର ସବୁଯାକ ବାହୁ ଛେଦନ କଲେ ଓ ତା'ପରେ ତା' ମୁଣ୍ଡ କାଟ କଲେ ।

"କ୍ଷମତା-ଗର୍ବହିଁ ହେଲା କାର୍ତ୍ତିବୀର୍ଯ୍ୟର କାଳ !" କହିଲେ ଋଷିବର୍ଗ ।





# କିସ ପୁଣି ଦେଖା ନଯାଏ!

ହରିପୁର ଗାଁର ପଣ୍ଡିତ ଜଗନ୍ନାଥଙ୍କର ଚାରି ଝିଅ, କିନ୍ତୁ ପୁଅ ନଥିଲେ। ସେ ଅନେକ ପୂଜା ଅର୍ଚ୍ଚନା କରି ଶେଷକୁ ପୁତ୍ରଲାଭ କଲେ। ଜଗନ୍ନାଥ ଅବଶ୍ୟ ସାଧାରଣ ଅବଧାନେ। ଏକେ ବ୍ରାହ୍ମଣ ଓ ତହିଁରେ ପାଠ ପଢ଼ାଉଥିବା ଯୋଗୁଁ ଲୋକେ ତାଙ୍କୁ ପଣ୍ଡିତ ବୋଲି ଡାକୁଥିଲେ। କିନ୍ତୁ ତାଙ୍କ ପୁଅ ଯେ ଦିନେ ମହାନ୍ ପଣ୍ଡିତ ହେବ, ଏଥିରେ ତାଙ୍କର ସନ୍ଦେହ ନଥିଲା। ତେଣୁ ମୂଳରୁହିଁ ସେ ପୁଅର ନାମ ରଖିଲେ ବିଶାରଦ!

ପୁଅ କ୍ରମେ ବଡ଼ ହେଲା। ବହୁ ଆଦରରେ ତାକୁ ପଣ୍ଡିତ ଓ ତାଙ୍କ ସ୍ତ୍ରୀ ପାଳିପୋଷି ବଡ଼ କରୁଥାନ୍ତି। ତେଣୁ ଟିକିଏ ଡେରିରେ ତା'ର ଖଡ଼ିଛୁଆଁ ହେଲା। ପଣ୍ଡିତେ ନିଶ୍ଚିତ ଥାନ୍ତି ଯେ ତାଙ୍କ ପୁଅ ଯେତେ ଡେରିରେ ବିଦ୍ୟାରମ୍ଭ କଲେ ବି ଅଳ୍ପଦିନ ଭିତରେ ନିଜ ସୁବାସରେ ଚାରିଦିଗ ମହକାଇ ଦେବ।

ପାଠପଢ଼ା ଆରମ୍ଭ ହେଲା। ପ୍ରଥମ ଦିନହିଁ ପୁଅ ସିଲଟ କଚାଡ଼ି ଭାଙ୍ଗି ଦେଲା। ପଣ୍ଡିତଙ୍କ ମୁହଁ ଶୁଖିଗଲା। କିନ୍ତୁ ତାଙ୍କ ସ୍ତ୍ରୀ କହିଲେ, "ଏହା ତ ଭଲ ଲକ୍ଷଣ। ଭବିଷ୍ୟତରେ ପୁଅ ସମସ୍ତଙ୍କର ସବୁ ଗର୍ବ ଚୂନା କରିଦେବ।" ପଣ୍ଡିତ ଖୁସି ହେଲେ। କିଏ କହିବ, ହୁଏତ ସେହି ସୌଭାଗ୍ୟ ସେମାନଙ୍କ କପାଳରେ ଲେଖା ଅଛି!

କିନ୍ତୁ ବିଶାରଦ ତାଙ୍କର ସେ କଳ୍ପନାକୁ ବେଶିଦିନ ସ୍ଥାୟୀ ହେବାକୁ ଦେଲା ନାହିଁ। ସେ ଯଦି ସିଲଟରେ ଖଡ଼ି ଛୁଆଁଇଲା, ତେବେ ସେଥିରେ କିମ୍ଭୂତ କିମାକାର ଚିହ୍ନମାନ ଆଙ୍କିଲା, ଅ ଆ କ ଖ ନୁହେଁ। ଯେତେ ପ୍ରକାରେ ପଣ୍ଡିତେ ତା' ମନ ପାଠରେ



ଲଗାଇବାକୁ ଚେଷ୍ଟା କଲେ, ସବୁ କିଛି ବ୍ୟର୍ଥ ହେଲା ।

ଦିନେ ଦୁଇପହର ବେଳେ ପଣ୍ଡିତେ ଦେଖିଲେ ତାଙ୍କ ଘର ଆଗ ବରଗଛ ତଳେ ଜଣେ ସନ୍ନ୍ୟାସୀ ବସି ବିଶ୍ରାମ କରୁଛନ୍ତି । ସନ୍ନ୍ୟାସୀଙ୍କ ମୁହଁକୁ ଅନାଇ ପଣ୍ଡିତଙ୍କର ମନେ ହେଲା, ସେ ଜଣେ ତେଜସ୍ୱୀ ପୁରୁଷ । ସେ ପାଖକୁ ଯାଇ ସନ୍ନ୍ୟାସୀଙ୍କୁ ନିଜ ଘରକୁ ପାଛୋଟି ଆଣିଲେ । ପଣ୍ଡିତଙ୍କ ସ୍ତ୍ରୀ ଭଲ ରନ୍ଧାରନ୍ଧି କରି ପାରୁଥିଲେ । ସନ୍ନ୍ୟାସୀଙ୍କୁ ସେମାନେ ଭଲ ଭାବରେ ଖୁଆଇଲେ । ସନ୍ନ୍ୟାସୀ ପରିତୁଷ୍ଟ ହୋଇ କହିଲେ, "ବତ୍ସ, ତୋର କିଛି ସମସ୍ୟା ଅଛି ଯଦି କହ । ମୁଁ ଯଦି ପାରିବି, ତୋତେ ସାହାଯ୍ୟ କରିବି ।"

ପଣ୍ଡିତେ ବିଶାରଦକୁ ନେଇ ସେ ଯେଉଁ ସମସ୍ୟାରେ ପଡିଛନ୍ତି, ନିଷ୍କପଟରେ ସେକଥା କହିଲେ ।

ସନ୍ନ୍ୟାସୀ ବିଶାରଦକୁ ଦେଖିବାକୁ ଚାହିଁଲେ । ବିଶାରଦ ସେତେବେଳେ ତା' ସାଙ୍ଗମାନଙ୍କ ସହ ପଡିଆରେ ଖେଳୁଥିଲା । ପଣ୍ଡିତଙ୍କ ସ୍ତ୍ରୀ ଯାଇ ତାକୁ ଡାକିନେଇ ଆସିଲେ । ସନ୍ନ୍ୟାସୀ ଅନେକ ସମୟ ଧରି ବିଶାରଦର ହାତ ଦେଖିଲେ । ତା'ପରେ ପଣ୍ଡିତଙ୍କୁ ଅନାଇ କହିଲେ, "ବତ୍ସ! ତମେ ହତାଶ ହେବାର କୌଣସି କାରଣ ନାହିଁ । ଏହାର ଭାଗ୍ୟ ବଡ଼ ଟାଣ । ଇଏ ଦିନେ ରାଜାଶ୍ରୟ ପ୍ରାପ୍ତ ହେବ!"

"ରାଜାଶ୍ରୟ!" ପଣ୍ଡିତଙ୍କ ବିସ୍ମୟର ସୀମା ରହିଲା ନାହିଁ ।

"ହଁ, ତମେ ଏହାକୁ ସଂସ୍କୃତ ଶିଖାଅ!" ସନ୍ନ୍ୟାସୀ ଏତିକି କହି ଚାଲିଗଲେ ।

ପଣ୍ଡିତେ ମହା ସମସ୍ୟାରେ ପଡ଼ିଲେ । ଯେଉଁ ପିଲା ସାଧାରଣ ଅକ୍ଷର ଶିଖିବାକୁ ପ୍ରସ୍ତୁତ ନୁହେଁ, ସେ ପୁଣି ସଂସ୍କୃତ ଶିଖିବ, ସଂସ୍କୃତ ଶିଖି ଏଡ଼େ ବଡ଼ ପଣ୍ଡିତ ହେବ ଯେ ରାଜାଶ୍ରୟ ପାଇବ, ଏ ଭବିଷ୍ୟତବାଣୀ ଗ୍ରହଣ କରିନେବା ସହଜ ନଥିଲା । କିନ୍ତୁ ସନ୍ନ୍ୟାସୀ ବା କାହିଁକି ମିଛ କହିବେ? ତେଣୁ ସେ ପୁଅକୁ ସଂସ୍କୃତ ଶିଖାଇବାକୁ ଲାଗି ପଡିଲେ ।

ବିଷାରଦ ବି ଦିନେ ରାଜଦରବାରରେ ପଣ୍ଡିତ ରୂପେ ସମ୍ମାନ ପାଇବା ଆଶାରେ ସଂସ୍କୃତ ଶିଖିବାକୁ ବସିଗଲା ।

ଲୋକେ ପଚାରୁଥାନ୍ତି, "ପଣ୍ଡିତେ ! ପୁଅ ପାଠଶାଠ କିପରି ପଢୁଛି ? ଯେତେହେଲେ ସେ ଆପଣଙ୍କ ପୁଅ । ତାକୁ ବିଦ୍ୟାରେ କିଏ ଝିପି ପାରିବ ?"

ପଣ୍ଡିତଙ୍କ ପାଟିରେ କଥା ଫୁଟେ ନାହିଁ । ଲୋକେ ଟିପ୍‌ପଣୀ ଦିଅନ୍ତି, "ପଣ୍ଡିତଙ୍କର ଗୋଟାଏ ବଡ଼ ଗୁଣ ହେଲା ସେ ନିଜ ପୁଅର ବଡ଼େଇ କରନ୍ତି ନାହିଁ । ମହତ୍ ଲୋକେ ନମ୍ର ହୁଅନ୍ତି ।"



ପଣ୍ଡିତେ ଏ ଟିପ୍‌ପଣୀ ଶୁଣି ହସିବେ କି କାନ୍ଦିବେ ବୁଝିପାରନ୍ତି ନାହିଁ । ସେ ଦୁଇଗୁଣ କଷ୍ଟ କରି ପୁଅକୁ ପାଠ ଶିଖାଇବାରେ ଲାଗି ପଡ଼ନ୍ତି । କିନ୍ତୁ ସେଥିରେ ଅଧିକା ଲାଭ କିଛି ହୁଏ ନାହିଁ । ବେଶି ରାତିଯାଏ ଦୀପ ପାଖରେ ବସି ରହି ପୁଅକୁ ପଢ଼ାଇଲେ ତାଙ୍କ ସ୍ତ୍ରୀ ବିରକ୍ତ ହୋଇ କହନ୍ତି, "ପୁଅର ସ୍ୱାସ୍ଥ୍ୟ ବଡ଼ କଥା ନା ପାଠ ପଢ଼ା ବଡ଼ କଥା ? ସ୍ୱାସ୍ଥ୍ୟ ଭଲ ଥିଲେ ସେ ଆଜି ନହେଲେ କାଲି ପାଠ ଶିଖିଯିବ । ଏଥିରେ ବ୍ୟସ୍ତ ବା ଅଧୀର ହେବାର କ'ଣ ଅଛି ?"

କିନ୍ତୁ ସେ ପାଠ ପ୍ରତି ଖାତିର ନକରି ହସି ହସି କହେ, "ବାପା ! ମୁଁ ରାଜଦରବାରରେ ସ୍ଥାନ ପାଇଗଲେ ତମକୁ ଓ ବୋଉକୁ ନେଇ ସେଠାରେ ବହୁତ ସୁଖରେ ରଖିବି । ତମେ ଚିନ୍ତା କରନାହିଁ ।"

"ବାପା ! ସେପାଇଁ ମୁଁ ଚିନ୍ତା କରୁନାହିଁ । କିନ୍ତୁ ଆଗେ ତ ତୁ ଦୁଇ ଅକ୍ଷର ପାଠ ପଢ଼ିଲେ ଯାଇ ଦରବାରରେ ସ୍ଥାନ ପାଇବୁ !" ପଣ୍ଡିତେ ଦୀର୍ଘନିଃଶ୍ୱାସ ଛାଡ଼ି କହନ୍ତି ।

"ଚିନ୍ତା କରନାହିଁ ।" ପୁଅ ବେପରୁଆ ଭାବରେ କହେ ।

କିନ୍ତୁ ପଣ୍ଡିତେ ଯେତେ ଚେଷ୍ଟା କଲେ ବି ନା କାହିଁକି, ବିଷାରଦକୁ ଦେଇ ସଂସ୍କୃତରେ ଗୋଟିଏ ବି ସହଜ ବାକ୍ୟ କୁହାଇ ପାରିଲେ ନାହିଁ । ପ୍ରତି ଶବ୍ଦକୁ ସେ ଭୁଲ୍ ଉଚ୍ଚାରଣ କରିବ; ଲିଙ୍ଗ ଓଲଟ ପାଲଟ କରିଦେବ ଏବଂ



ବାକ୍ୟଟି ଶେଷ କରିବା ବେଳକୁ ମନେ ହେବ ସେ ଗୋଟିଏ ସମ୍ପୂର୍ଣ୍ଣ ନୂଆ ଭାଷା କହୁଛି । କିନ୍ତୁ ସେ ନିଜେ ନିଜ ଭୁଲ ସୁଧାରିବା ଦିଗରେ ଆଗ୍ରହୀ ନଥିଲା । ସେ ସବୁ କଥାରେ କହେ, "ହଁ ମ, ଏଇଥିରେ ଚଳିଯିବ !"

ପଣ୍ଡିତେ ଦିନେ ଦୁଃଖ କରି ନିଜ ସ୍ତ୍ରୀ ଆଗରେ କହିଲେ, "ନାଃ, ଏତେ ଲୋକଙ୍କୁ ପାଠ ପଢ଼ାଇଲି, କିନ୍ତୁ ବିଶାରଦକୁ ପାରିବି ନାହିଁ ।

ତାଙ୍କ ସ୍ତ୍ରୀ କହିଲେ, "ଦେଖ, ଆମ ପୁଅ କ'ଣ ଏତେ ଲୋକ ଭଳି ସାଧାରଣ ? ତମେ କେତେ ପାଠ ଜାଣ ଯେ ତାକୁ ପଢ଼ାଇବ ? ସବୁଠାରୁ ବଡ଼ ପଣ୍ଡିତ ପାଖରେ ନେଇ ତାକୁ ଛାଡ଼ି ଦିଅ ।"

ପଣ୍ଡିତେ ଦୀର୍ଘନିଃଶ୍ୱାସ ପକାଇ ପୁଅକୁ ଧରି କୋଡ଼ିଏ କୋଶ ଦୂରରେ ଥିବା ବିଖ୍ୟାତ ସଂସ୍କୃତ ଶିକ୍ଷକ ବିଦ୍ୟାବାଗୀଶଙ୍କ ପାଖରେ ଉପନୀତ ହେଲେ । ବିଦ୍ୟାବାଗୀଶଙ୍କୁ ସବୁ କଥା ସେ ନିଷ୍କପଟରେ କହିଲେ ।

"ତମେ ବିଶାରଦକୁ ଏଠି ଛାଡ଼ି ଯାଅ । ଆଜଯାଏ ମୋଠୁଁ ଶିକ୍ଷା ପାଇ ସଂସ୍କୃତ ପଣ୍ଡିତ ନ ହୋଇଛି, ଏଭଳି ଜଣେ ବି କେହି ନାହିଁ ।"

ପଣ୍ଡିତେ ନିଶ୍ଚିନ୍ତ ହୋଇ ପୁଅକୁ ସେଠାରେ ଛାଡି ଘରକୁ ବାହୁଡ଼ି ଗଲେ ।

ପନ୍ଦର ଦିନ ଭିତରେ ବିଦ୍ୟାବାଗୀଶ ବୁଝିଲେ ଯେ ସେ ଜୀବନରେ ଏଭଳି ଛାତ୍ର ଦେଖି ନଥିଲେ । ବିଶାରଦ ଯେ ଖାଲି କୌଣସି ସଂସ୍କୃତ ଶିଖିବାକୁ ଅକ୍ଷମ, ତାହା ନୁହେଁ, ସେ ତା'ର ଭୁଲ ଭ୍ରାନ୍ତି ସଜାଡ଼ିବାକୁ ପ୍ରସ୍ତୁତ ନୁହେଁ । ଭୁଲ୍ ଦେଖାଇଲେ ସେ ବେପରୁଆ ଭାବରେ କହେ, "ସେଇଥିରେ ଚଳିଯିବ ଆଜ୍ଞା !"

ଦୁଇବର୍ଷ ବିତିଗଲା । ବିଦ୍ୟାବାଗୀଶ୍ ବିଶାରଦକୁ କହିଲେ, "ବାପା ! ତମ ବିଦ୍ୟାଧ୍ୟୟନ ଶେଷ ହେଲା । ସଂସ୍କୃତ ଜଗତରେ ତମର ଶିଖିବାକୁ ବାକି ବୋଲି କିଛି ନାହିଁ । ଏଥର ଯୁଆଡ଼େ ଯିବ ଯାଅ ।"

"ରାଜଦରବାର ଛଡ଼ା ଆଉ କୁଆଡ଼େ ଯିବ ? ଆଚ୍ଛା, ଗୁରୁଦେବ, ଆପଣଙ୍କୁ ଭବିଷ୍ୟତରେ ଅବଶ୍ୟ ଯଥେଷ୍ଟ ଅର୍ଥ ଦେବି ।"

ବର୍ତ୍ତମାନ ଆପଣଙ୍କର କିଛି ଉପକାର କରି ପାରେଁ ?" ବିଶାରଦ ପଚାରିଲା ।

"ତମେ କୁଆଡ଼େ ହେଲେ ନିଜକୁ ମୋର ଶିଷ୍ୟ ବୋଲି ପରିଚୟ ଦେବ ନାହିଁ । ତମେ ଯଦି ମୋର ଏତକ ଉପକାର କରିବ, ମୁଁ କୃତାର୍ଥ ହେବି ।" ଗୁରୁ କହିଲେ ।

"ବୁଝିଲି ଆଜ୍ଞା, ମୋ ଆଦର୍ଶରେ ଅନୁପ୍ରାଣିତ ହୋଇ ଆପଣଙ୍କ ପାଖକୁ ବହୁତ ଶିକ୍ଷାର୍ଥୀ ଆସିବେ । ଆପଣ ହଇରାଣ ହେବେ । ଠିକ୍ ଅଛି । ମୁଁ କହିବି ନାହିଁ ।"

ବିଦ୍ୟାବାଗୀଶ କୌଣସି ମତେ ନିଜ ମୁହଁର ଭାବ ଲୁଚାଇ ରଖିଲେ । ବିଶାରଦ ତାଙ୍କୁ ଲମ୍ବ ପ୍ରଣାମ ପକାଇଲା ଓ କହିଲା, "ଗୁରୁଦେବ, ରାଜଦରବାରରେ ମୋର ସ୍ଥାନ ହୋଇଯିବା ପରେ ଆପଣ କିନ୍ତୁ ରାଜଧାନୀକୁ ଯାଇ ମୋର ଅତିଥି ହେବେ । ସେତେବେଳେ ମୋର ପ୍ରତିପତ୍ତି ବଢ଼ି ଯାଇଥିବ । ମୁଁ ସମସ୍ତଙ୍କୁ କହିଦେବି କି ମୋ ଭଳି ପଣ୍ଡିତ ପ୍ରସ୍ତୁତ କରିସାରିବା ପରେ ଆପଣଙ୍କର ଆଉ କାହାକୁ ପାଠ ପଢ଼ାଇବା ଆବଶ୍ୟକ ନାହିଁ । ତେଣୁ କେହି ଆପଣଙ୍କୁ ହରକତ କରିବାକୁ ସାହସ କରିବେ ନାହିଁ ?"

ଏହା କହି ବିଶାରଦ ବିଦାୟ ନେଇ ଚାଲିଗଲା । ରାଜଧାନୀକୁ ଯାଉଁ ଯାଉଁ ବାଟରେ ସନ୍ଧ୍ୟା ହୋଇଗଲା । ବିଶାରଦ ଜଣେ ବ୍ରାହ୍ମଣଙ୍କ ସହ ତାଙ୍କ ଅତିଥି ହୋଇ ତାଙ୍କ ଘରକୁ ଗଲା । ତାଙ୍କ ଘରେ ଯାଇ ଦେଖିଲା;





ବ୍ରାହ୍ମଣଙ୍କ ସ୍ତ୍ରୀ ବ୍ରାହ୍ମଣଙ୍କ ଉପରେ କୌଣସି କାରଣରୁ ଭୀଷଣ ଖପା। ବିଶାରଦ ମହିଳାଙ୍କୁ କହିଲା, "ସାଧ୍ୱୀ! ମୁଁ ଜଣେ ମହାନ୍ ସଂସ୍କୃତ ପଣ୍ଡିତ। ମୋ ଆଗମନରେ ଆପଣ ଶିଷ୍ଟ ବ୍ୟବହାର କରିବା ଉଚିତ।"

ମହିଳା ଖୁସି ହେଲେ। କାରଣ ସଂସ୍କୃତରେ ତାଙ୍କର ଭଲ ଜ୍ଞାନ ଥିଲା। ଅତିଥି ସହ ସେ ସଂସ୍କୃତରେ କଥାବାର୍ତ୍ତା ଆରମ୍ଭ କରିଦେଲେ। କିନ୍ତୁ ବିଶାରଦ ଯେମିତି ସଂସ୍କୃତ କରିବାକୁ ଆରମ୍ଭ କଲେ, ସେ ପ୍ରଥମେ ଆଶ୍ଚର୍ଯ୍ୟ ଓ ପରେ ଆତଙ୍କିତ ହେଲେ। ଆଶ୍ଚର୍ଯ୍ୟ ହେବାର କାରଣ, ବିଶାରଦଙ୍କ ପଦେ କଥା ବି ସେ ବୁଝିପାରିଲେ ନାହିଁ। ଆତଙ୍କର କାରଣ, ବିଶାରଦଙ୍କ ଉଚ୍ଚାରଣରୁ ତାଙ୍କର ଧାରଣା ହେଲା, ସେ ଜଣେ ତାନ୍ତ୍ରିକ!

ରାତିରେ ସେ ତାଙ୍କ ସ୍ୱାମୀଙ୍କୁ କହିଲେ, "ଭଦ୍ରେ! ତାନ୍ତ୍ରିକ ପ୍ରୟୋଗ କରି ମୋତେ ବଶୀଭୂତ କରିବା ଦରକାର ନାହିଁ। ମୁଁ ଏଣିକି ଆପଣଙ୍କ ସହ ଭଦ୍ର ବ୍ୟବହାର କରିବି।"

ବ୍ରାହ୍ମଣ ଦେଖିଲେ, ବିଶାରଦଙ୍କୁ ଘରକୁ ଆଣିବା ଦ୍ୱାରା ଶାପେ ବର ହୋଇଛି। ସେ ଗମ୍ଭୀର ଭାବରେ କହିଲେ, "ବେଶ୍, ବେଶ୍। ସ୍ତ୍ରୀର କର୍ତ୍ତବ୍ୟ ହେଲା ସ୍ୱାମୀ ଆଗରେ ନମ୍ର ଭାବରେ ଚାଲିବା। ତମେ ଯେ ଏହା ବୁଝି ପାରିଲଣି, ଏହାହିଁ ଯଥେଷ୍ଟ। ତାନ୍ତ୍ରିକଙ୍କୁ ବିଦାୟ କରିଦେବି। ତମ ଉପରେ ମନ୍ତ୍ରତନ୍ତ୍ର ପ୍ରୟୋଗ କରିବା ଦରକାର ନାହିଁ।"

ସକାଳେ ବ୍ରାହ୍ମଣ ଆନନ୍ଦରେ ଅତିଥିଙ୍କୁ ଶହେ ମୁଦ୍ରା ଦେଇ ବିଦାୟ ଦେଲେ।

"ଆପଣ ମଝିରେ ସଂସ୍କୃତ ପଣ୍ଡିତ ବୀରଭଦ୍ର ଶର୍ମାଙ୍କ ଘରେ ଅତିଥି ହୋଇ ପାରନ୍ତି।" ଏହା କହି ବ୍ରାହ୍ମଣ ବୀରଭଦ୍ରଙ୍କ ପାଖକୁ ଚିଠି ଲେଖି ବିଶାରଦ ହାତରେ ଦେଲେ।

"ବୀରଭଦ୍ର କିଏ?" ବିଶାରଦ ପଚାରିଲା।

"ସେ ଅଞ୍ଚଳର ସବୁଠାରୁ ଜଣାଶୁଣା ସଂସ୍କୃତ ପଣ୍ଡିତ। ଆପଣଙ୍କ ସହ କଥାବାର୍ତ୍ତା କରି ସେ ଆପ୍ୟାୟିତ ହେବେ, ସନ୍ଦେହ ନାହିଁ।" କହିଲେ ବ୍ରାହ୍ମଣ।

ପରଦିନ ରାତିରେ ବିଶାରଦ ବୀରଭଦ୍ର ଘରେ ପହଞ୍ଚି ଛାତି ବଢ଼ାଇ ଦେଇ ସିଧା ସଂସ୍କୃତରେ କଥା ଆରମ୍ଭ କରିଦେଲା । ବୀରଭଦ୍ର ସେ ଅଞ୍ଚଳରେ "ନିରସ୍ତ ପାଦପ ଦେଶେ ଏରଣ୍ଡୋପି ଦ୍ରୁମାୟତେ" ରୀତିରେ ପଣ୍ଡିତ ବୋଲାଉଥିଲେ । ଅର୍ଥାତ୍ ତାଙ୍କ ସଂସ୍କୃତ ଜ୍ଞାନ ଥିଲା ସାମାନ୍ୟ । ବିଶାରଦର ସଂସ୍କୃତକୁ ସେ ଅତ୍ୟାଧୁନିକ ସଂସ୍କୃତ ମନେ କରି, ନିଜ ଅଜ୍ଞାନତା ଧରାପଡ଼ିଯିବା ଆଶଙ୍କାରେ ପରଦିନହିଁ ଶହେ ଟଙ୍କା ଦେଇ ବିଦାୟ କରିଦେଲେ ।

ବିଶାରଦ ଆନନ୍ଦରେ ଯାଇ ରାଜଧାନୀରେ ପହଞ୍ଚିଲା ଓ ଧର୍ମଶାଳାରେ ରାତି ଯାପନ କଲାବେଳେ ଶୁଣିଲା, ରାଜାଙ୍କ ଦରବାରରେ ପ୍ରଧାନ ପଣ୍ଡିତ ହେଲେ ଧର୍ମରାଜ ।

ସେ ଯାଇ ଧର୍ମରାଜଙ୍କ ପାଖରେ ପହଞ୍ଚି ନିଜ ଉଦ୍ଦେଶ୍ୟ ଜଣାଇଲା । ଧର୍ମରାଜ ତା' ସଂସ୍କୃତ ଶୁଣି ହସ ଚାପି ରଖି କହିଲେ, "ବାପା! ରାଜା ଜଣେ ବିଶିଷ୍ଟ ସଂସ୍କୃତଜ୍ଞ । ତମ ସଂସ୍କୃତ ଶୁଣିଲେ ତମ ଜିଭ କାଟିଦେବେ । ତମେ ଦରବାରୀ ପଣ୍ଡିତ ହେବାର ଦୁରାଶା ମନରୁ ତ୍ୟାଗ କର । ଅନ୍ୟ କିଛି କାମର ସନ୍ଧାନ କର !"

"ଆପଣ ମୋତେ ଈର୍ଷା କରୁଛନ୍ତି । କାରଣ ରାଜା ଥରେ ମୋ ଗୁଣର ପରିଚୟ ପାଇଲେ ଆପଣଙ୍କୁ ପଚାରିବେ ନାହିଁ !" ବିଶାରଦ ରାଗିଯାଇ କହିଲା ।



ଧର୍ମରାଜ ଏ କଥା ଶୁଣି ଚମକି ଉଠିଲେ ଓ କହିଲେ, "ବାପା! ମୁଁ ବୁଢ଼ା କାହାରି ସହ ପ୍ରତିଦ୍ୱନ୍ଦିତା କରିବାର ବୟସ ବା ଉତ୍ସାହ ମୋର ନାହିଁ ।"

"ମୁଁ ବିଶ୍ୱାସ କରୁନାହିଁ ।" ବିଶାରଦ କହିଲା ।

ଧର୍ମରାଜ ବଡ଼ ଅଡୁଆରେ ପଡ଼ିଲେ ଓ କହିଲେ, "ଆଚ୍ଛା ବାବୁ, ତମେ ଯାଇ ରାଜାଙ୍କୁ ଭେଟିପାର । କିନ୍ତୁ ମୁଁ ତମକୁ ପଠାଇଛି, ଏକଥା କହି ମୋତେ ବିପଦରେ ପକାଇବ ନାହିଁ । ତମ୍ଭେ ଆଉ ଯାହା ଜରିଆରେ ପାରୁଛ, ଯାଅ । ସାବଧାନ ! ଦୁଇ ଚାରିଦିନ ଛାଡ଼ି ଯିବ । ରାଜା ବର୍ତ୍ତମାନ ମନ ଦୁଃଖରେ ଅଛନ୍ତି ।"

ବିଶାରଦ ରାଗିଯାଇ ସିଧା ଦରୁଆନ୍ ପାଖରେ ପହଞ୍ଚି ସଂସ୍କୃତରେ ଧର୍ମରାଜ ବିରୁଦ୍ଧରେ କହିଲା । ଦରୁଆନ୍ ଭାବିଲା ସେ କହୁଛି କି ଧର୍ମରାଜ ତାକୁ ରାଜାଙ୍କ ପାଖକୁ ପଠାଇଛନ୍ତି, ଦରୁଆନ୍ ବାଟ ଛାଡ଼ିଦେଲା ।

ରାଜାଙ୍କ ପ୍ରିୟ ଘୋଡାଟି ମରିଯାଇଥିବା ଯୋଗୁଁ ସେ ତିନିଦିନ କାଳ ବିଷାଦଗ୍ରସ୍ତ ହୋଇ ରହିଥିଲେ । ବିଶାରଦ ଯାଇ ସଙ୍ଗେ ସଙ୍ଗେ ସଂସ୍କୃତ କହିବାକୁ ଆରମ୍ଭ କରିଦେଲା ।

"ତମେ କିଏ ?" ରାଜା ପଚାରିଲେ ।

ବିଶାରଦ ଆହୁରି ଉତ୍ସାହରେ ସଂସ୍କୃତରେ ଏ ପ୍ରଶ୍ନର ଉତ୍ତର ଦେଲା ।

"ଆରେ ବାବୁ, ତମେ କିଏ? ତମେ କେଉଁ ରାଜ୍ୟରୁ ଆସିଛ? କେଉଁ ଭାଷାରେ କଥା କହୁଛ ?" ରାଜା ବ୍ୟସ୍ତ ହୋଇ ପଚାରିଲେ ।

ବିଶାରଦ ତା' ନିଜ ସଂସ୍କୃତରେ ଏସବୁ ପ୍ରଶ୍ନର ଉତ୍ତର ଦେଲା ।

ପ୍ରଥମେ ରାଜା କିଛି ବୁଝିପାରିଲେ ନାହିଁ । ତା'ପରେ ଯେତେବେଳେ ବୁଝିଲେ ଯେ ବିଶାରଦ ସଂସ୍କୃତ କହୁଛି, ସେତେବେଳେ ସେ ହଠାତ୍ ହସିବାକୁ ଆରମ୍ଭ କଲେ । ହସି ହସି ବେଦମ ହୋଇଗଲେ । ତାଙ୍କର ବିଷାଦ କଟିଗଲା । ସେ ନିଜ ତରଫରୁ ବିଶାରଦକୁ ଦରବାରରେ ରହିବାକୁ କହିଲେ । ଯେତେବେଳେ ତାଙ୍କର ସଂସ୍କୃତର ଲଳକା ଶୁଣିବାକୁ ମନ ହୁଏ, ସେତେବେଳେ ସେ ବିଶାରଦକୁ ଡାକନ୍ତି । ବିଶାରଦ ମୋଟା ଦରମା ପାଇଲା ଓ ବାପା ମା'ଙ୍କୁ ସହରକୁ ନେଇ ଆସିଲା । ଗୁରୁଦକ୍ଷିଣା ବି ପଠାଇଲା । ଗୁରୁ ବିଦ୍ୟାବାଗୀଶ୍ କହିଲେ, "କିସ ପୁଣି ଦେଖା ନଯାଏ ବଞ୍ଚି ରହିଥିଲେ ମହୀରେ !"

ଯଥା ସମୟରେ ବିଶାରଦ ଗୁରୁଙ୍କୁ ବି ସହରକୁ ଆଣି କିଛିଦିନ ପାଇଁ ନିଜ ପାଖରେ ରଖିଲା ଓ ଗୁରୁଙ୍କର ବହୁତ ଯତ୍ନ ନେଲା । ଗୁରୁ ଖାଲି ବଲ ବଲ କରି ତାକୁ ଦେଖୁଥାନ୍ତି ।






# ବହ୍ନି ଦ୍ୱୀପ

[୨]

[ଧବଳଗିରିର ଦୁଇ ରାଜପୁତ୍ର ଜଣକୁ ଶୀକାର କରିବାକୁ ଯାଇ ପରସ୍ପର ବିଚ୍ଛିନ୍ନ ହୋଇ ପଡ଼ିଲେ। ସାନ ରାଜପୁତ୍ର ଚନ୍ଦ୍ରସେନ ଜଣେ ସିଦ୍ଧ ପୁରୁଷଙ୍କୁ ଭେଟିଲେ। ତାଙ୍କ ପାଖରୁ ପାଇଲେ ଗୋଟିଏ ଯାଦୁପେଟିକା। ବଣ ଭିତରେ ଠାଏଁ ସେ ପେଟିକା ଖୋଲିଦେବା ମାତ୍ରେ ଗୋଟିଏ ପ୍ରାସାଦ ଉଭା ହେଲା। ହଠାତ୍ ଏକ ରାକ୍ଷସ ତାଙ୍କୁ ମାରିଦେବାକୁ ଉଦ୍ୟତ ହେଲା, କିନ୍ତୁ ଚନ୍ଦ୍ରସେନ ନିଜ ଜ୍ୟେଷ୍ଠ ପୁତ୍ର ଅଠରବର୍ଷର ହେଲେ ରାକ୍ଷସକୁ ଦେଇ ଦେବେ, ଏହି ସର୍ତ୍ତରେ ଛାଡ଼ ପାଇଲେ। ତା'ପରେ—]

ରାକ୍ଷସ ଉଗ୍ରାକ୍ଷ ବଣ ଭିତରେ ଅଦୃଶ୍ୟ ହୋଇଯିବା ପରେ ଚନ୍ଦ୍ରସେନ ଭାବିଲେ, ତାଙ୍କର ବର୍ତ୍ତମାନ କର୍ତ୍ତବ୍ୟ କ'ଣ? ତାଙ୍କ ଆଗରେ ବିଶାଳ ପ୍ରାସାଦ ବିଦାୟୀ ସୂର୍ଯ୍ୟଙ୍କ କିରଣରେ ଝିଲ୍‌ମିଲ୍ କରୁଥାଏ। ପ୍ରାସାଦର ଶୋଭା ଅତୁଳନୀୟ। ରାଜପୁତ୍ର ନିଜ ପିତାଙ୍କ ତଥା ମାତୁଳଙ୍କ ପ୍ରାସାଦ ସହ ତୁଳନା କରି ଦେଖିଲେ, ଏ ପ୍ରାସାଦ ବହୁତ ବିଶାଳ ଓ ମନୋରମ। କିନ୍ତୁ ଏହା ଭିତରକୁ ଯିବା ସକାଶେ ତାଙ୍କର ଆଗ୍ରହ ନଥାଏ। ସେ ନିଜ ଘର କଥା ଭାବି ମ୍ରିୟମାଣ ଅନୁଭବ କରୁଥାନ୍ତି। ଅଜାଣତରେ ସେ ବାଟ ଚାଲିବାକୁ ଆରମ୍ଭ କରି

ଅଗ୍ନିକ ରାଜ୍ୟରେ




ହେଉଥିଲେ। ତାହା ବଣ ମୂଳକ ହେଲେ ମଧ୍ୟ ସେଠାରେ ବଣ ମଝିରେ ମଝିରେ ଜନବସତି ଥିବାର ସେ ଜାଣି ପାରିଲେ। ଭିନ୍ନ ଭିନ୍ନ ଦିଗରୁ କୁକୁଡ଼ାର ରାବ ଶୁଭୁଥାଏ। ଚତୁର୍ଦ୍ଦିଗରେ ଅନେକ ପ୍ରକାର ଫୁଲଫଳ ଗଛ ହୋଇଥାଏ। ସୂର୍ଯ୍ୟାସ୍ତ ସମୟ ହୋଇଥିବାରୁ ପକ୍ଷୀମାନେ କଳରବ କରି ନିଜ ନିଜ ନୀଡ଼କୁ ଲେଉଟି ଆସୁଥାନ୍ତି। ଚନ୍ଦସେନ କୁଆଡ଼େ ଯିବେ ତାହା ସ୍ଥିର କରିପାରୁ ନଥିଲେ। ତେଣୁ ଚାଲିଥିଲେ ଧିରେ ଧିରେ। ଥରେ ତାଙ୍କର ମନେହେଲା କିଏ ଅବା ତାଙ୍କୁ ଅନୁସରଣ କରୁଛି। କିନ୍ତୁ ତାହା ନିଜର କଳ୍ପନା ବୋଲି ଭାବି ସେ ମନ ଭିତରୁ ସେ ଧାରଣାକୁ ଦୂର କରିଦେଲେ।

"ମହାରାଜ! କୁଆଡ଼େ ଯିବା ହେଉଛନ୍ତି?"

ଏ ସମ୍ବୋଧନ ଶୁଣି ଚନ୍ଦସେନ ତମକି ପଡ଼ି ପଛକୁ ଅନାଇଲେ। ତାଙ୍କୁ ଅଭିବାଦନ କରି ଜଣେ ସମ୍ଭ୍ରାନ୍ତ ଲୋକ କହିଲେ, "ମୁଁ ଓ ସେନାପତି ଆପଣଙ୍କୁ ଅନୁସରଣ କରୁଛୁଁ। ବର୍ତ୍ତମାନ ସନ୍ଧ୍ୟା ହେବାକୁ ବିଶେଷ ବିଳମ୍ବ ନାହିଁ। ଆପଣ ପ୍ରାସାଦ ଭିତରକୁ ଚାଲନ୍ତୁ।"

ଚନ୍ଦସେନ ପ୍ରଥମେ ଭାବିଲେ, ସେ ଅପରିଚିତ ଲୋକଟି କୌଣସି ରାଜା ସହ ବଣ ଭିତରକୁ ଆସିଥିଲା। ରାଜା କୁଆଡ଼େ ଦୂରକୁ ଚାଲିଗଲେଣି। ତାଙ୍କୁ ଲୋକଟି ରାଜା ବୋଲି ଭୁଲ କରିଛି। ସେ ଏଣେତେଣେ ଅନାଇ ଅଖ-ପାଖରେ ଆଉ କେହି ଅଛନ୍ତି କି ନାହିଁ ତାହା ଲକ୍ଷ୍ୟ କରି ଦେଖିଲେ। ଆଉ କାହିଁ କେହି ଥିବାର ଆଖିରେ ପଡ଼ିଲା ନାହିଁ? ତେଣୁ ସେ ସମ୍ଭ୍ରାନ୍ତ ଦିଶୁଥିବା ଲୋକଟି ତାଙ୍କୁ ମୃଦୁ ମୃଦୁ ହସି ଅନାଇ ରହିଥାଏ ଓ ସେ କ'ଣ କହିବେ ତାହା ଶୁଣିବାକୁ ଅପେକ୍ଷା କରିଥାଏ।

ଚନ୍ଦସେନ ହୋଦୋପାଞ୍ଚ ହୋଇ ପଚାରିଲେ, "ତମେ କାହାକୁ ଖୋଜୁଛ?"

"ମହାରାଜ, ଆମେ କାହାକୁ କାହିଁକି ଖୋଜିବୁଁ? ଆପଣଙ୍କୁହିଁ ଅପେକ୍ଷା କରିଛୁଁ।" ଏହା କହି ସେ ବ୍ୟକ୍ତି ପୁଣି ଥରେ ଅଭିବାଦନ କଲେ।

"ମୋତେ କହୁଛ?" ଚନ୍ଦସେନ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ।

ସେ ସମ୍ଭ୍ରାନ୍ତ ଲୋକ ହାତ ତାଳି ଦେଇ ପଛକୁ ବୁଲିପଡ଼ି କହିଲେ, "ସେନାପତି ! ମହାରାଜ ବଡ଼ କ୍ଲାନ୍ତ ଓ ଅନ୍ୟମନସ୍କ ଜଣା ପଡ଼ୁଛନ୍ତି । ସବାରି ବାହକମାନଙ୍କୁ ଡାକ ।"

"ମନ୍ତ୍ରୀବର ! ସେମାନେ ପ୍ରସ୍ତୁତ ।" ଏକଥା କହିଲେ ଜଣେ ହୃଷ୍ଟପୁଷ୍ଟ ବ୍ୟକ୍ତି ।

ଚନ୍ଦସେନ ବୁଝିଲେ ଯେ ସେ ଦୁହେଁ ହେଲେ ମନ୍ତ୍ରୀ ଓ ସେନାପତି । ଚନ୍ଦସେନ ସେମାନଙ୍କ ଆଡ଼କୁ ଅନାଇଛନ୍ତି, ସବାରି ଓ ବାହକମାନେ ଆସି ପହଞ୍ଚିଗଲେ । ମନ୍ତ୍ରୀ କହିଲେ, "ମହାରାଜ ! ଆପଣ ବସିଯା'ନ୍ତୁ । ସିଧା ଏମାନେ ଆପଣଙ୍କୁ ନେଇ ଶୟନ-କକ୍ଷରେ ପହଞ୍ଚାଇ ଦେବେ ।"




ଚନ୍ଦସେନ ଦେଖିଲେ ସୁନ୍ଦର ସବାରିଟିଏ ତାଙ୍କ ଆଗରେ ଥୁଆ ହେଲା । ତାହା ଦେହରେ ଅନେକ ପ୍ରକାର ମୂଲ୍ୟବାନ ଧାତୁ ନିର୍ମିତ ଅଳଙ୍କାର ଖଞ୍ଜା ଯାଇଥାଏ । ବାହକମାନେ ସବାରି ଥୋଇ ତାଙ୍କୁ ଜୁହାର କଲେ ।

"ମହାରାଜ ଯଦି କିଛି ସମୟ ପଦଚାରଣା କରିବାକୁ ଚାହାନ୍ତି, ତେବେ ଆମ୍ଭେମାନେ ଅପେକ୍ଷା କରିବୁଁ । ଯଦି କ୍ଲାନ୍ତ ଲାଗୁଥାଏ, ତେବେ ସବାରି ଆରୋହଣ କରନ୍ତୁ ।" ସେ ସମ୍ଭ୍ରାନ୍ତ ଲୋକଜଣକ କହିଲେ ।

ଚନ୍ଦସେନ ଟିକିଏ ଇତସ୍ତତଃ କରି ତା'ପରେ ସବାରି ଉଢ଼େ ବସିଲେ । ବାହକ-ମାନେ ସବାରିକୁ ବେଶି ହଲ୍‌ଚଲ୍ ନକରି ପାହାଡ଼ ଉପରକୁ ଓ ତା'ପରେ ପ୍ରାସାଦ ଭିତରକୁ ନେଇଗଲେ । ଶୟନକକ୍ଷ ଆଗରେ ସବାରି ବସିଲା । ସେଠି ଆଉ ଜଣେ କର୍ମଚାରୀ ଅପେକ୍ଷା କରିଥାନ୍ତି । ମନ୍ତ୍ରୀ ତାଙ୍କୁ କହିଲେ, "କୋଷାଧ୍ୟକ୍ଷ ମହୋଦୟ ! ଆଜି ମହାରାଜ ହାଲିଆ ହୋଇ ପଡ଼ିଛନ୍ତି । ତମେ ହିସାବପତ୍ର ସକାଳେ ଦେଖାଇବ ।"

"ଯେପରି ନିର୍ଦ୍ଦେଶ, ମନ୍ତ୍ରୀବର !" ଏହା କହି କୋଷାଧ୍ୟକ୍ଷ ଚାଲିଗଲେ ।

ଚନ୍ଦସେନ କୋଠରି ଭିତରକୁ ଦୃଷ୍ଟିପାତ କରି ପୁଲକିତ ହେଲେ । ସେଭଳି ଦୁଗ୍ଧ-ଫେନନିଭ ଶେଯ ତାଙ୍କ ନିଜ ଘରେ ସେ କେବେ ପାଇ ନଥିଲେ । ସେ ଭିତରକୁ

ଯାଇ ବସି ପଡ଼ିଛନ୍ତି, ପରିଚାରକମାନେ ଆସି ସେଠାରେ ଅନେକ ପ୍ରକାର ଖାଦ୍ୟଦ୍ରବ୍ୟ ସଜାଇ ରଖିଲେ । ମନ୍ତ୍ରୀ କହିଲେ, ମହାରାଜ ଏଇଠି ମଣୋହି କରି ନିଅନ୍ତୁ । ଆଉ ଅନ୍ୟ କୋଠରୀକୁ ଯିବାର ଆବଶ୍ୟକତା ନାହିଁ ।"

ଚନ୍ଦ୍ରସେନଙ୍କୁ ସେତେବେଳକୁ ଭୀଷଣ ଭୋକ ଲାଗିଲାଣି । ସେ ଆରାମରେ ଖାଇ ପିଇ ଶୋଇଗଲେ ।

ସକାଳେ ନିଦ ଭାଙ୍ଗିଲା ବେଳକୁ ବାତାୟନ ଦେଇ ସୂର୍ଯ୍ୟ କିରଣ ଆସି କୋଠରୀ ଭିତରେ ପଡ଼ିଲାଣି । ସେ ଉଠି ବସି ଦେଖିଲେ ପାଖରେ ଗୋଟିଏ କୋଠରୀ ଭିତରେ ପ୍ରାତଃକୃତ୍ୟ ଓ ସ୍ନାନର ବ୍ୟବସ୍ଥା ରହିଛି । ନୂଆ ପୋଷାକ ବି ରଖା ଯାଇଛି । ସେ ସ୍ନାନ କରି ନୂଆ ପୋଷାକ ପିନ୍ଧି କୋଠରୀରୁ ବାହାରିବା ମାତ୍ରେ ମନ୍ତ୍ରୀ ଆସି ତାଙ୍କୁ ଅଭିବାଦନ କରି କହିଲେ, "ମହାରାଜ, ବର୍ତ୍ତମାନ ଯଦି ଆପଣ ଅନୁମତି ଦେବେ, ତେବେ କୋଷାଧ୍ୟକ୍ଷ ଆସି ଆପଣଙ୍କୁ ଉଆସରେ ଥିବା ଧନରତ୍ନର ହିସାବ ଦେଖାଇବେ ।"

"ମନ୍ତ୍ରୀବର ! ସେ ଆସି ମୋତେ ଦେଖାଇବା ଦରକାର କ'ଣ ? ହିସାବଟି ମୋ ପାଖକୁ ପଠାଇଦେଲେ ହେଲା । ସେଥିପାଇଁ ବ୍ୟସ୍ତ ହେବା ଦରକାର ନାହିଁ । ବର୍ତ୍ତମାନ ଅନ୍ୟ ଗୋଟିଏ ବିଷୟରେ ମୁଁ ଆପଣଙ୍କ ସହାୟତା ଲୋଡ଼ିବ ।" ଚନ୍ଦ୍ରସେନ କହିଲେ ।



"ମହାରାଜ ! କ'ଣ ଲୋଡ଼ା କହନ୍ତୁ । ସଙ୍ଗେ ସଙ୍ଗେ ସେହି ଅନୁସାରେ ବ୍ୟବସ୍ଥା କରାଯିବ ।" ମନ୍ତ୍ରୀ ଉତ୍ସାହରେ କହିଲେ ।

"ଆପଣ ଧବଳଗିରି ରାଜ୍ୟ କଥା ଶୁଣିଥିବେ । ସେ ରାଜ୍ୟର ରାଜା ତାର-କେଶ୍ବର ହେଲେ ମୋର ବାପା । କାହାକୁ ପଠାଇ ସେ କିପରି ଅଛନ୍ତି, ସେ ଖବର ଆଣାଇ ପାରିବେ ?"

"ମହାରାଜ ! ଏଥିରେ ଅସୁବିଧା କ'ଣ ? ମୁଁ ବର୍ତ୍ତମାନ ସେ ବ୍ୟବସ୍ଥା କରୁଛି ।" ଏହା କହି ମନ୍ତ୍ରୀ ଚାଲିଗଲେ ।

କିଛି ସମୟ ଭିତରେ ଚନ୍ଦ୍ରସେନଙ୍କ ସକାଶେ ସୁସ୍ବାଦୁ ଜଳଯୋଗ ଆସିଲା । ତା'ପରେ କୋଷାଧ୍ୟକ୍ଷଙ୍କଠୁଁ ଧନରତ୍ନର ତାଲିକା ଆସିଲା । ତାହା ଦେଖି ଚନ୍ଦ୍ରସେନଙ୍କ ବିସ୍ମୟର ସୀମା ରହିଲା ନାହିଁ । ପ୍ରାସାଦରେ ଯେତେ ଧନରତ୍ନ ରହିଛି, ତାହା ଧବଳଗିରିର କୌଣସି ରାଜା କଳ୍ପନା କରି ନଥିବେ । ସେସବୁ ଧନରତ୍ନ ଦେଖିବାକୁ ତାଙ୍କର ଇଚ୍ଛା ହେଲା । ସେ କୋଷାଧ୍ୟକ୍ଷକୁ ଡକାଇ ତାହା କହିବା ମାତ୍ରେ କୋଷାଧ୍ୟକ୍ଷ ତାଙ୍କୁ ଧନରତ୍ନ ସଞ୍ଚିତଥିବା ଘରକୁ ନେଇଗଲେ । ସେସବୁ ସମ୍ପଦ ଦେଖି ଚନ୍ଦ୍ରସେନଙ୍କ ଆଖି ଖୋସି ହୋଇଗଲା । ଧନ୍ୟ ସେ ସିଦ୍ଧ ପୁରୁଷଙ୍କ ମହିମା ! ଖାଲି ପ୍ରାସାଦ ନୁହେଁ, ସେ ଦେଇଥିବା ଯାଦୁ ପେଟିକା ଭିତରୁ ପ୍ରାସାଦ ସମେତ ଏତେ ଧନରତ୍ନ ଓ କର୍ମଗୃହୀ ସବୁ ମିଳିଗଲେ । ଏ ଅଦ୍ଭୁତ କଥା କ୍ରମେ ତାଙ୍କ ଦେହ ସୁହା ହୋଇଗଲା । ଏତେ





ଧନରତ୍ନର ମାଲିକ ହୋଇ ପାରିଥିବାରୁ ମନେ ମନେ ସେ ଗର୍ବ ବୋଧ କଲେ ।

କୋଷାଧ୍ୟକ୍ଷ ଗୋଟିକ ପରେ ଗୋଟିଏ ପେଟି ଖୋଲି ଦେଉଥାନ୍ତି । ଚନ୍ଦସେନ ଦେଖୁଥାନ୍ତି କେଉଁଥିରେ ନାନା ପ୍ରକାର ହୀରା ଖଚିତ ହାର ଅଛି ତ କେଉଁଥିରେ ମୋତିମାଣିକ୍ୟ ଯୋଖା ମୁକୁଟ ରହିଛି । ତାଙ୍କ ଉପଯୋଗୀ କେତେ ପ୍ରକାର ପାଦୁକା ଏବଂ ରତ୍ନ ଖଚିତ ପୋଷାକ ମଧ୍ୟ ସାଇତା ହୋଇ ରହିଥାଏ । ସେ ଗୋଟିଏ ନୂଆ ପୋଷାକ ପରିଧାନ କଲେ । ତାଙ୍କୁ ଖୁବ୍ ମାନିଲା ।

ଯେତିକିବେଳେ ଜଣେ କର୍ମଚାରୀ ଆସି ଖବର ଦେଲା କି ଧବଳଗିରିର ରାଜା ସ୍ୱୟଂ ସେଠାକୁ ଆସୁଛନ୍ତି । ଧବଳଗିରି ସେଠାରୁ ବେଶି ଦୂର ନୁହେଁ ବୋଲି ଚନ୍ଦସେନ ବୁଝିଲେ ଓ ଖୁସି ହେଲେ । ପିତାଙ୍କୁ ସ୍ୱାଗତ କରିବା ନିମନ୍ତେ ସେ ପ୍ରସ୍ତୁତ ହେଲେ । ଘଣ୍ଟାକ ପରେ ଦୂରରୁ ଘୋଡାର ଟାପୁ ଶବ୍ଦ ଶୁଭିଲା । ରାଜା ତାରକେଶ୍ୱର ସସୈନ୍ୟ ଆସି ପହଞ୍ଚିଲେ ଓ ଚନ୍ଦସେନଙ୍କୁ କୁଣ୍ଢାଇ ପକାଇଲେ । ସେ କହିଲେ, "ବାପା ! ତୋ ଭାଇ ସୁରସେନ ଯେତେବେଳେ ମୋତେ ଆସି ଖବର ଦେଲା କି ବଣ ଭିତରେ ତୁ କୁଆଡ଼େ ହଜିଗଲୁ, ମୁଁ ବହୁତ ସୈନ୍ୟସାମନ୍ତ ପଠାଇ ତୋତେ ଖୋଜି ବାହାର କରିବାକୁ ଚେଷ୍ଟା କଲି । ବିଫଳ ହୋଇ ଭାବିଲି ବୋଧହୁଏ ତୁ ବାଘ ଭାଲୁଙ୍କ କବଳରେ ପଡ଼ିଲୁ । ତୋତେ ବର୍ତ୍ତମାନ ଦେଖି ମୁଁ କେଡ଼େ ଆନନ୍ଦିତ ସେକଥା କିପରି କହିବି ? କିନ୍ତୁ ତୁ ଏଠି ଆସି ରାଜା ହେଲୁ କିପରି ? ତୋ ପୂର୍ବରୁ ଏଠି କିଏ ରାଜା ଥିଲେ ?" ରାଜା ତାରକେଶ୍ୱର ଏକା ନିଃଶ୍ୱାସକେ ସବୁ କହି କହିଗଲେ ।

"ବାପା ! ସେସବୁ କଥା ଗୋପନରେ ପରେ କହିବି । ସମସ୍ତଙ୍କ ଆଗରେ ନୁହେଁ ।" ଚନ୍ଦସେନ କଣ୍ଠସ୍ୱର ନିମ୍ନ କରି ରାଜାଙ୍କୁ କହିଲେ ।

ରାଜା ତାରକେଶ୍ୱରଙ୍କ ସମ୍ମାନାର୍ଥେ ମନ୍ତ୍ରୀ ଓ ସେନାପତି ଭୋଜି ଓ ମନୋରଞ୍ଜନ

କାର୍ଯ୍ୟକ୍ରମର ବ୍ୟବସ୍ଥା କରୁଥାନ୍ତି । ଆନନ୍ଦ ଉତ୍ସବରେ କେତେ ଘଣ୍ଟା ବିତିଯିବା ପରେ ଚନ୍ଦ୍ରସେନ ବାପାଙ୍କୁ ଗୋପନରେ ସବୁ କଥା ଶୁଣାଇଲେ । ରାଜା ଆଶ୍ଚର୍ଯ୍ୟ ହୋଇ ସବୁ ଶୁଣିଲେ । ତାଙ୍କ ମୁହଁରେ ଆନନ୍ଦ ମଧ୍ୟ ଫୁଟି ଉଠୁଥାଏ । କିନ୍ତୁ ଯେତେବେଳେ ସେ ରାକ୍ଷସ ଉଗ୍ରାକ୍ଷର ସର୍ତ୍ତ କଥା ଶୁଣିଲେ, ତାଙ୍କ ମୁହଁରୁ ଆନନ୍ଦ ଉଭେଇଗଲା ।

"ଏହା ତ ବଡ଼ ବିଷମ ବ୍ୟାପାର ! ପୁଅ ଅଠରବର୍ଷର ହେଲେ ତାକୁ ରାକ୍ଷସ ନେଇଯିବ !"

"ବାପା ! ମୁଁ ଏଯାଏ ବିଭା ହୋଇନାହିଁ । ବିଭା ହେବି, ପ୍ରଥମ ସନ୍ତାନ ପୁଅ ହେବ, ସେ ଅଠରବର୍ଷ ଯାଏ ବଞ୍ଚିବ—ତା'ପରେ ରାକ୍ଷସ ତାକୁ ନେଇଯିବ, ଏତେ କଥା ବର୍ତ୍ତମାନଠୁଁ ଭାବି ଲାଭ କ'ଣ ? ବର୍ତ୍ତମାନ ଯେଉଁ ସୁଖ ଭୋଗ ଅଛି, ତାହା କରାଯାଉ !" ଚନ୍ଦ୍ରସେନ ବେପରୁଆ ଭାବରେ କହିଲେ ।

ରାଜା ଏଥିରେ ବିଶେଷ ଆଶ୍ୱସ୍ତ ହୋଇପାରିଲେ ନାହିଁ । ସେ କହିଲେ, "ଠିକ୍ ଅଛି ପୁଅ । ଧବଳଗିରି ରାଜ୍ୟ ତୋର ଏ ବଣ ରାଜ୍ୟକୁ ଲାଗି ଅବସ୍ଥିତ । ତେଣୁ ଯେତେବେଳେ ଯାହା ଅସୁବିଧା ହେବ ଜଣାଇ ଦେଉଥିବୁ ।"

"ସେଥିରେ ସନ୍ଦେହ ଅଛି ?" ଗର୍ବିତ ଭାବରେ ହସି ଚନ୍ଦ୍ରସେନ କହିଲେ ।

ଏହାପରେ ମନ୍ତ୍ରୀ ଓ ସେନାପତି ରାଜା ତାରକେଶ୍ୱରଙ୍କ ସମ୍ମାନାର୍ଥେ ବ୍ୟବସ୍ଥା କରିଥିବା ଭୋଜିରେ ଯାଇ ପିତାପୁତ୍ର ବସିଲେ । ଏତେ ପ୍ରକାର ସୁସ୍ୱାଦୁ ଖାଦ୍ୟ ଏତେ ଶୀଘ୍ର ପ୍ରସ୍ତୁତ ହୋଇ ପାରିଲା, ଏଥିରେ ରାଜା ତାରକେଶ୍ୱର ଯେପରି ଆଶ୍ଚର୍ଯ୍ୟ ହେଲେ, ଚନ୍ଦ୍ରସେନ ସେହିପରି ଗର୍ବିତ ହେଲେ । ରାଜାଙ୍କ ସହ ଆସିଥିବା ସୈନ୍ୟମାନେ ସେ ପ୍ରାସାଦ ଦେଖି ଓ ଭୋଜି ଖାଇ ଆନନ୍ଦରେ କୋଳାହଳ କରୁଥାନ୍ତି ।

(କ୍ରମଶଃ)





# ସିଦ୍ଧାନ୍ତ ବଦଳ

ନିଶା ଗରଜୁଥାଏ । ହୁହାଲୁ ହୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ଟିକେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ, ତାପରେ ଶବଟିକୁ କାନ୍ଧରେ ପକାଇ ସେ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତମେ ଏ ଘୋର ରାତିରେ ବିପଦ ଆପଦ ପ୍ରତି ଭ୍ରୂକ୍ଷେପ ନକରି ଯେ ଏଭଳି କାମରେ ହାତ ଦେଇଛ, ଏହା

ବେତାଳ କଥା



ପଛରେ କି ପ୍ରକାର ପ୍ରେରଣା ରହିଛି ? ତମେ କାହାର ପ୍ରତି ଇର୍ଷାବଶତଃ ତାକୁ ଦବାଇ ଦେବା ନିମନ୍ତେ ଏ କାମ ହାତକୁ ନେଇନାହଁ ତ ? ମଣିଷ ଇର୍ଷା ବଶରେ ଥରେ ଥରେ ଅପ୍ରତ୍ୟାଶିତ କାମ କରିଥାଏ । ତମକୁ ଗୋଟାଏ ବୃତ୍ତାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମହର ଲାଘବ ମନେ ହେବ ।"

ବେତାଳ ଗପିଲା : ସେ ଅନେକ ପୂର୍ବ କାଳର କଥା । ଲବଙ୍ଗ ରାଜ୍ୟରେ ଜଣେ ଜମିଦାର ଥା'ନ୍ତି । ତାଙ୍କ ନାମ ଚନ୍ଦ୍ରଭୂପତି । ତାଙ୍କର ପିଲାପିଲି ନ ହେବାରୁ ତାଙ୍କ ମନରେ ବହୁତ ଦୁଃଖ ଥାଏ । ସେ ଜ୍ୟୋତିଷ ଓ ଗୁଣୀମାନଙ୍କ ପରାମର୍ଶ କ୍ରମେ ନାନା ପ୍ରକାର ମନ୍ତ୍ରତନ୍ତ୍ର ଓ ଅନୁଷ୍ଠାନମାନ କଲେ । କିନ୍ତୁ ଫଳ କିଛି ହେଲା ନାହିଁ । ଗୋଟିଏ ବଡ଼ ଓ ପ୍ରାଚୀନ ଜମିଦାର ବଂଶ ଲୁପ୍ତ ହେବ, ଏକଥା ଚିନ୍ତା କରି ତାଙ୍କ ଶୁଭେଚ୍ଛୁମାନେ ମଧ୍ୟ ଚିନ୍ତିତ ଥିଲେ ।

ଚନ୍ଦ୍ରଭୂପତିଙ୍କ ଘରେ କାମଦାମ କରୁଥାଏ ଗୋପାଳ ନାମକ ଯୁବକ । ଚନ୍ଦ୍ରଭୂପତି ଓ ଗୋପାଳର ବୟସ ପ୍ରାୟ ଏକା । ଗୋପାଳର ମଧ୍ୟ ପିଲାପିଲି ନଥିଲେ । ତେଣୁ ଚନ୍ଦ୍ରଭୂପତି ତାହା ପ୍ରତି ବହୁତ ସହାନୁଭୂତିଶୀଳ ଥିଲେ । ସେ ଯଦି କୌଣସି ଅନୁଷ୍ଠାନ କରୁଥିଲେ, ସେଥିରେ ଗୋପାଳକୁ ମଧ୍ୟ ଅଂଶ ଗ୍ରହଣ କରିବାକୁ ସୁଯୋଗ ଦେଉଥିଲେ ।

ଚନ୍ଦ୍ରଭୂପତି ଦାନଧ୍ୟାନ ଓ ସମାଜ ସେବାରେ ମନୋନିବେଶ କରୁଥାନ୍ତି । କିନ୍ତୁ ସେଥିରେ ବା କେତେଦିନ ଭୁଲି ରହିବେ ? କେତେଜଣ ସଜ୍ଜନ ତାଙ୍କୁ ତୀର୍ଥଯାତ୍ରାରେ ଯିବାକୁ ପରାମର୍ଶ ଦେଲେ । ଚନ୍ଦ୍ରଭୂପତି ମଧ୍ୟେ ମଧ୍ୟେ ଯାଇ ତୀର୍ଥ ବୁଲି ଆସୁଥାନ୍ତି ।

ଏହିପରି ଭାବରେ ଦିନ ଗଡ଼ି ଚାଲିଥାଏ । ଥରେ ଜମିଦାର ଚନ୍ଦ୍ରଭୂପତି ସସ୍ତ୍ରୀକ ତୀର୍ଥକୁ ଯାଇଥିଲେ । ଠାଏଁ ସେ ଦୁହେଁ ଜଣେ ମହାତ୍ମାଙ୍କୁ ଭେଟିଲେ । ସେ ମହାତ୍ମାଙ୍କର ଅନେକ ମହିମା ଥିଲା ବୋଲି ଶୁଣି ସେ ଦୁହେଁ ତାଙ୍କୁ ପୁତ୍ରଲାଭ ନିମନ୍ତେ ନିଜ ଅଭିଳାଷ କଥା କହିଲେ । ମହାତ୍ମା କିଛି ସମୟ ଧ୍ୟାନରେ

ବସି ତା'ପରେ ଜମିଦାରଙ୍କ ସ୍ତ୍ରୀଙ୍କୁ ଗୋଟିଏ କବଚ ଧାରଣ କରିବାକୁ ଦେଲେ ଓ କହିଲେ କି ଅଚିରେ ତାଙ୍କର ସନ୍ତାନ ଲାଭ ହେବ ।

ମହାତ୍ମାଙ୍କ ଉପରେ ଜମିଦାରଙ୍କର ଖୁବ୍ ବିଶ୍ୱାସ ଜନ୍ମିଥାଏ । ତେଣୁ ସେ ଘରେ ପହଞ୍ଚି ଗୋପାଳକୁ ସସ୍ତ୍ରୀକ ସେ ମହାତ୍ମାଙ୍କ ପାଖକୁ ଯିବାକୁ ପରାମର୍ଶ ଦେଲେ । ଗୋପାଳ ଗଲା ଏବଂ ତାବିଜ ଧରି ଲେଉଟି ଆସିଲା ।

ଯଥା ସମୟରେ ଜମିଦାରଙ୍କର ତଥା ଗୋପାଳର ଦୁଇଟି ପୁତ୍ର ସନ୍ତାନ ହେଲେ । ଜମିଦାରଙ୍କ ପୁଅର ନାମ ହେଲା କମଳଭୂଷଣ । ଗୋପାଳ ତା' ପୁଅର ନାମ ରଖିଲା ଚନ୍ଦ୍ର ।

ଦୁଇ ଶିଶୁ କ୍ରମେ ବଡ଼ ହେଲେ । ସେମାନେ ଦୁହେଁ ସାଙ୍ଗ ହୋଇ ଖେଳଧୂଳି କରୁଥାନ୍ତି । ସେମାନଙ୍କ ପିତାମାତାଙ୍କ ଆନନ୍ଦର ସୀମା ନଥାଏ ।

କିନ୍ତୁ ଦେଖାଗଲା, କମଳ ପାଠ ପଢ଼ିବାକୁ ମୋଟେ ଆଗ୍ରହୀ ନୁହେଁ । ସେ ସବୁବେଳେ ଭଲ ଖାଇବାକୁ, ଭଲ ପିନ୍ଧିବାକୁ ଓ ଖେଳିବାକୁ ଆଗ୍ରହୀ, କିନ୍ତୁ ବହି ବା ସିଲଟ ଖଡ଼ି ଦେଖିଲେ ଦୌଡ଼ି ପଳାଇଯିବ ।

ପ୍ରଥମେ ପ୍ରଥମେ ଜମିଦାର ନିଜକୁ ନିଜେ ନାନା ପ୍ରକାରେ ବୁଝାଇ ଦେଉଥାନ୍ତି କି ଟିକିଏ ବଡ଼ ହେଲେ ପୁଅ ପାଠରେ ମନ ଦେବ । କିନ୍ତୁ ତାଙ୍କର ସେ ଆଶା ଆଶାରେହିଁ ରହିଗଲା ।



ତେଣେ ଚନ୍ଦ୍ର ବ୍ୟବହାରରେ ଯେପରି ବିନୟୀ, ବୁଦ୍ଧିରେ ସେହିପରି ସରସ ହେବାର ଦେଖାଗଲା । ସେ ମନଦେଇ ପାଠ ପଢୁଥାଏ । ତା' ବ୍ୟବହାରରେ ଗୃହାଳର ଶିକ୍ଷକମାନେ ବହୁତ ଖୁସି ହେଉଥାନ୍ତି । ତାଙ୍କ ପୁଅ ଅଯୋଗ୍ୟ ଏବଂ ତାଙ୍କ କର୍ମଗୃଖୀର ପୁଅ ସୁଯୋଗ୍ୟ ହେବାର ଜମିଦାର ଲକ୍ଷ୍ୟ କରୁଥାନ୍ତି । ମନେ ମନେ ସେ ଦୁଃଖ ପାଉଥାନ୍ତି, କିନ୍ତୁ କାହାରିକୁ ତାହା ପ୍ରକାଶ କରୁ ନଥାନ୍ତି। ସେ ନିଜ ପୁଅ ମନରେ ପାଠପଢ଼ା ପ୍ରତି ଆଗ୍ରହ ସୃଷ୍ଟି କରିବା ନିମନ୍ତେ ଅନେକ ପ୍ରକାର ଉଦ୍ୟମ କଲେ, କିନ୍ତୁ କିଛି ଫଳ ହେଲା ନାହିଁ । ଜମିଦାରଙ୍କ ମନରେ ସବୁବେଳେ ଅଶାନ୍ତି ଭରି ରହିଲା ।

ଚନ୍ଦ୍ରର ଚାଟଶାଳୀରେ ପାଠପଢ଼ା ଶେଷ ହେଲା । ଦିନେ ଅବଧାନେ ଆସି ଗୋପାଳକୁ କହିଲେ, "ଗୋପାଳ, ଚନ୍ଦ୍ରର ଭବିଷ୍ୟତ କଥା କ'ଣ ଭାବୁଛ ?"

ଗୋପାଳ କହିଲା, "ଆଜ୍ଞା, ସେକଥା ତ ମୋଟେ ଭାବି ନାହିଁ !"

ଅବଧାନେ କହିଲେ, "ତମକୁ ଗୋଟାଏ କଥା କହି ରଖେଁ । ଚନ୍ଦ୍ର ଭଳି ମେଧାବୀ ପିଲା ଲକ୍ଷକରେ ଗୋଟିଏ ହୁଅନ୍ତି । ତମେ ଯେମିତି ହେଲେ ବି ତାକୁ କାଶୀ ପଠାଇଦିଅ । ସେ ଯାଇ ସେଠାରେ ଉଚ୍ଚ ଶିକ୍ଷା ଲାଭ କରୁ ।"

ଗୋପାଳ କିଛି ସମୟ ପର୍ଯ୍ୟନ୍ତ କଥା କହିପାରିଲା ନାହିଁ । ତା'ପରେ କହିଲା, "ଆଜ୍ଞା, ମୁଁ ଜମିଦାରଙ୍କର ଜଣେ ସାମାନ୍ୟ କର୍ମଚାରୀ । କାଶୀ ପଠାଇ ପୁଅକୁ ଉଚ୍ଚ ଶିକ୍ଷା ଦେବା ଭଳି ତାକତ୍ ମୋର କାହିଁ ?"

ଅବଧାନେ କହିଲେ, "ତମେ ଏତେ ସହଜରେ ହାଲ୍ ଛାଡ଼ି ଦିଅ ନାହିଁ । ବରଂ ଜମିଦାରଙ୍କୁ କୁହ । ସେ ତମର ସହାୟତା କରି ପାରନ୍ତି ।"

ଗୋପାଳ ଚିନ୍ତାରେ ବୁଡ଼ି ରହିଲା । ସେଦିନ ସନ୍ଧ୍ୟାବେଳେ ଜମିଦାର ଏକାକୀ ବସିଥିବାର ଦେଖି ସେ ଯାଇ ତାଙ୍କ ପାଖରେ ପହଞ୍ଚି ଚୁପ୍‌ଚାପ୍ ଠିଆ ହୋଇ ରହିଲା ।

"କ'ଣ, କିଛି କହିବାର ଅଛି ?" ଜମିଦାର ପଚାରିଲେ ।

"ହଁ । ସାହସ ହେଉନାହିଁ । ଅବଧାନେ କହୁଛନ୍ତି ଚନ୍ଦ୍ରକୁ କାଶୀ ପଠାଇ ବେଶି ପାଠ



ପଢ଼ାଇଲେ ଭଲ ହେବ । ମୋର ବା ସେ ସାଧ୍ୟ କାହିଁ ? ଆପଣ ଯଦି ଦୟା କରି କିଛି ଋଣ ଦିଅନ୍ତେ, ତେବେ ମୋ ଦରମାରୁ ଅଳ୍ପ ଅଳ୍ପ କଟାଇ ତାହା ପରିଶୋଧ କରି ଦିଅନ୍ତି । ସେ ଟଙ୍କାରେ ଚନ୍ଦ୍ରକୁ ନେଇ କାଶୀରେ ଭର୍ତ୍ତି କରି ଦିଅନ୍ତି ।" ଗୋପାଳ କହିଲା ।

ଜମିଦାର ହସିଲେ ଓ କହିଲେ, "ଗୋପାଳ, ତୋ ମୁଣ୍ଡ ଖରାପ ହୋଇଗଲାଣି କି ? କାଶୀରେ ପୁଅକୁ ରଖି ଖୋରାକ ପୋଷାକ ଯୋଗାଇ ପାଠ ପଢ଼ାଇବା ପାଇଁ କେତେ ଟଙ୍କା ଲାଗିବ କିଛି ଜାଣିଚୁ ? ତୋ' ଦରମା ବା କେତେ ଯେ ସେଥିରୁ ତୁ ଅଳ୍ପ ଅଳ୍ପ କଟାଇ ଋଣ ପରିଶୋଧ କରିବୁ ? ସେସବୁ କଥାରେ ମୁଣ୍ଡ ପୂରାଇବା ଦରକାର ନାହିଁ । ଚନ୍ଦ୍ର ବରଂ ମୋ ସିରସ୍ତାରେ କିରାଣୀ ହୋଇ ଯୋଗ ଦେଉ ।"

ଗୋପାଳ କିଛି ନ କହି ମୁଣ୍ଡ ତଳକୁ କରି ଚାଲିଗଲା ।

ପରଦିନ ଜମିଦାର ଉଦ୍ୟାନରେ ବୁଲୁଥିଲେ ହଠାତ୍ ଦେଖିଲେ ଗୋଟିଏ ଗଛ ମୂଳରେ ତାଙ୍କ ପୁଅ କମଳ ଓ ଗୋପାଳର ପୁଅ ଚନ୍ଦ୍ର କିଛି କଥାବାର୍ତ୍ତା ହେଉଛନ୍ତି । ସେ ଗୋଟିଏ ବୁଦା ଆଢୁଆଳରେ ଠିଆ ହୋଇ କାନ ଡେରିଲେ ।

କମଳ କହିଲା, "ନା, ନା, ତୁ ମୋତେ କାଶୀ ଯାଇପାରିବୁ ନାହିଁ । ତୋତେ ମୁଁ ଯିବାକୁ ଦେବ ନାହିଁ । ଅଧିକା ପାଠ ପଢ଼ି କ'ଣଟା କରି ପକାଇବୁ ?"





"ତୁ ତେବେ ମୋତେ ଛାଡ଼ି କାଶୀ ଯିବୁ ନାହିଁ ତ? କଥା ଦେ।" କମଳ ଜିଗର ଲଗାଇଲା। ଚନ୍ଦ୍ର ନୀରବ ରହିବାରୁ କମଳ ପ୍ରାୟ କାନ୍ଦ କାନ୍ଦ ହୋଇ କହିଲା, "ତୁ ଯଦି କାଶୀ ଯିବୁ, ମୁଁ ଆଉ ତୋ ସହ କଥା କହିବି ନାହିଁ।"

ଚନ୍ଦ୍ର ସେଇଠୁ କୁଣ୍ଠିତ ସ୍ୱରରେ କହିଲା, "ଆଚ୍ଛା, ଦେଖିବା।"

ଜମିଦାର ଘରକୁ ଫେରି ଆସି ସଙ୍ଗେ ସଙ୍ଗେ ଗୋପାଳକୁ ଡକାଇଲେ ଓ କହିଲେ, "ଶୁଣ। ତୁ ଚନ୍ଦ୍ରକୁ କାଶୀ ପଠାଇବାର ବ୍ୟବସ୍ଥା କର। ମୋର ବନ୍ଧୁବାନ୍ଧବ ସେଠାରେ ଅନେକେ ଅଛନ୍ତି। ସେମାନେ ତା' ପାଇଁ ସବୁ କରିଦେବେ। ତା' ପଢ଼ା ପାଇଁ ଯେତେ ଖର୍ଚ୍ଚ ହେବ, ସବୁ ମୁଁ ବହନ କରିବି। ତୁ ଋଣ କରିବା ଦରକାର ନାହିଁ।"

ଗୋପାଳ ଯେତିକି ବିସ୍ମିତ ହେଲା, ସେତିକି ଆନନ୍ଦିତ ହେଲା। ସେ ଆନନ୍ଦାଶ୍ରୁ ପୋଛି ଚାଲିଗଲା।

ବେତାଳ ଟିକିଏ ଚୁପ୍ ରହି ତୀବ୍ର କଣ୍ଠରେ ରାଜା ବିକ୍ରମାର୍କଙ୍କୁ ପଚାରିଲା, "ରାଜା! ଜମିଦାର ଚନ୍ଦ୍ରଭୂପତିଙ୍କର ଏଭଳି ଆକସ୍ମିକ ପରିବର୍ତ୍ତନର ରହସ୍ୟ କ'ଣ? ଯିଏ ମାତ୍ର କେଇ ଘଣ୍ଟା ପୂର୍ବରୁ ଗୋପାଳର ପ୍ରସ୍ତାବକୁ ତାଚ୍ଛଲ୍ୟ ଭରେ ଉଡ଼ାଇ ଦେଇଥିଲେ, ସେ ହଠାତ୍ ଏତେ ଉତ୍ସାହରେ ପୁଣି କାହିଁକି ସେ

ଚନ୍ଦ୍ର କହିଲା, "ନା, ମୁଁ କାଶୀ ଯିବି। ବେଶି ପାଠ ପଢ଼ିବି।"

"ଦେଖିବା ତୁ କିପରି କାଶୀ ଯିବୁ! ବରଂ ତୁ କାଲି ମୋ ସାଙ୍ଗରେ ଆର ଗାଁକୁ ଚାଲ। ସେଠି ସେମାନେ ବାଜି ରଖି ଖେଳନ୍ତି। ଯିଏ ଜିତେ, ସିଏ ପଇସା ପାଏ। ତୁ ଯଦି ମୋ ସାଙ୍ଗରେ ରହି ମୋତେ ସେଠାରେ ବତାଇ ଦେବୁ, ତେବେ ମୁଁ ଜରୁର ଜିତିବି। ତୁ ନ ଗଲେ ମୁଁ ଯିବି ନାହିଁ। କହ, ଯିବୁଟି?" କମଳ ଅଧୀର ହୋଇ ପଚାରିଲା।

"ହଉ, ତୁ ଯଦି ଜିଗର କରିବୁ, ତେବେ ଯିବି!" ଚନ୍ଦ୍ର କହିଲା।

ପ୍ରସ୍ତାବକୁ କାର୍ଯ୍ୟକାରୀ କରିବାର ଦାୟିତ୍ୱ ନେଲେ? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ। ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ନୀରବ ରହିଲେ ତମର ଶିର ହେବ ସ୍କନ୍ଧଚ୍ୟୁତ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ: "ଜମିଦାରଙ୍କ ସିଦ୍ଧାନ୍ତ ବଦଳାଇବାର ଦୁଇଟି କାରଣ ଥିଲା। ପ୍ରଥମ କାରଣ ହେଲା, ସିଏ ବୁଝିପାରିଲେ ଯେ କମଳ ଚନ୍ଦ୍ରକୁ ଇର୍ଷା କରୁଛି। ଯିଏ ଯେଉଁ ଗୁଣ ନିଜେ ହାସଲ କରିବାକୁ ଚାହେଁ, ଅନ୍ୟଠି ସେ ଗୁଣ ଦେଖିଲେ ଇର୍ଷା କରେ। ତେଣୁ କମଳ ଚନ୍ଦ୍ରକୁ ଇର୍ଷା କରିବା ଦ୍ୱାରା ନିଜେ ଅନ୍ତତଃ କିଛି ଶିକ୍ଷାଦୀକ୍ଷାରେ ମନ ଦେବ, ଜମିଦାରଙ୍କ ଭିତରେ ଏ ଆଶାର ସଞ୍ଚାର ହେଲା। ଦ୍ୱିତୀୟରେ, ଚନ୍ଦ୍ର କମଳ ପ୍ରତି ଅତି ଅନୁରକ୍ତ ବୋଲି ସେ ବୁଝିଲେ। କିନ୍ତୁ ବର୍ତ୍ତମାନ ଚନ୍ଦ୍ରର ସାଂସାରିକ ବୁଦ୍ଧି ହୋଇନାହିଁ। ତେଣୁ କମଳର ମନ୍ଦ କାର୍ଯ୍ୟରେ ମଧ୍ୟ ତାକୁ ବୁଦ୍ଧି ଦେଇ ସେ ଉଭୟଙ୍କର ଅନିଷ୍ଟ କରିବ। ଚନ୍ଦ୍ର ଯେ ସଙ୍ଗେ ସଙ୍ଗେ ବାଡ଼ି ଖେଳିବା ସକାଶେ ଅନ୍ୟ ଗାଁକୁ ଯିବା ସକାଶେ ରାଜି ହୋଇଗଲା, ଏହା ତାହାର ପ୍ରମାଣ। ତେଣୁ ଦୁହେଁ ଅଲଗା ରହିବା ଭଲ। ତୃତୀୟରେ, ଚନ୍ଦ୍ର ଅଧିକ ପାଠ ପଢ଼ିଲେ ଫେରି ଆସି ସେ ନିଜର ଜ୍ଞାନ ଦ୍ୱାରା କମଳରହିଁ ଉପକାର କରିବାର ସମ୍ଭାବନା ଅଛି। କମଳ ଯଦି ମଣିଷ ନ ହୁଏ, ତେବେ ଅନ୍ତତଃ ଚନ୍ଦ୍ର ତାକୁ ଭବିଷ୍ୟତରେ ସତ୍ପରାମର୍ଶ ଦେଇ ବିପଦ ଆପଦରୁ ରକ୍ଷା କରିବ। ସେ ପାଇଁ ଚନ୍ଦ୍ର ବିଦ୍ୱାନ୍ ହେବା ଦରକାର। ତେଣୁ ଜମିଦାର ତା'ର ଉଚ୍ଚ ଶିକ୍ଷାର ଦାୟିତ୍ୱ ନେଇ ସଦ୍‌ବୁଦ୍ଧିର ପରିଚୟ ଦେଲେ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ବେତାଳ ତାଙ୍କ କାନ୍ଧରୁ ଖସି ଯାଇ ପୁନରାୟ ବୃକ୍ଷ ଡାଳରେ ଝୁଲି ପଡ଼ିଲା।

(କଳ୍ପିତ)



# ଭିନ୍ନ ଦିଗ

ସ୍ୱାମୀ ହଂସାନନ୍ଦ ସାଧାରଣ ଓ ଅସାଧାରଣ ଯେ କୌଣସି ପ୍ରଶ୍ନର ଉତ୍ତର ଦେଇ ପାରୁଥିଲେ । ସେ ଥରେ ବିକ୍ରମପୁର ଗ୍ରାମରେ ଆସି ପହଞ୍ଚିଲେ ।

ହଂସାନନ୍ଦଙ୍କ ସେବକ ସମସ୍ତଙ୍କୁ କହି ଦେଉଥାଏ, ଯିଏ ପ୍ରଶ୍ନ କରିବାକୁ ଆସିବେ, ସିଏ ମୁଠିଏ ଚାଉଳ ଓ ପାଞ୍ଚ ପଇସା ପ୍ରଣାମୀ ଦେଇଯିବେ । ଲୋକେ ଆନନ୍ଦରେ ତାହାହିଁ କରୁଥାନ୍ତି । ଦଶଦିନ ବିତିଗଲା ।

ଦିନେ ଆଧୁନିକ ବୋଲାଉଥିବା ଗୋବିନ୍ଦ ମହାପାତ୍ର ଆସି ସ୍ୱାମୀଜୀଙ୍କୁ ନମସ୍କାର କରି ପଚାରିଲେ, "ମୁଁ ଚାଉଳ ବା ପଇସା ଆଣି ନାହିଁ । ତଥାପି ପ୍ରଶ୍ନ ପଚାରି ପାରିବି କି ?"

"ପଚାର ।" ହଂସାନନ୍ଦ କହିଲେ ।

"ଆପଣଙ୍କ ସହ କଥାବାର୍ତ୍ତା କରି ଲୋକେ ଶାନ୍ତି ଓ ଆନନ୍ଦ ପାଉଛନ୍ତି, ସନ୍ଦେହ ନାହିଁ । କିନ୍ତୁ ଆପଣଙ୍କର ଚାଉଳ ଓ ପଇସା ପ୍ରତି ଲୋଭ କାହିଁକି ?"

ହଂସାନନ୍ଦ ହସିଲେ ଓ କହିଲେ, "ତମ ଗାଁର ଲୋକେ ଯେପରି ଶାନ୍ତି ଓ ଆନନ୍ଦ ପାଉଛନ୍ତି, ଅନ୍ୟ ଗାଁର ଲୋକେ ବି ସେପରି ପାଇବା ଉଚିତ ନା ନୁହେଁ ?"

"ଉଚିତ ନିଶ୍ଚୟ !" ଗୋବିନ୍ଦ କହିଲେ ।

"ସେମାନଙ୍କ ପାଇଁ ତେବେ ମୋତେ ବଞ୍ଚି ରହିବାକୁ ପଡ଼ିବ ତ ? ସେଥିପାଇଁ ସାମାନ୍ୟ ଚାଉଳ ଓ କିଛି ପଇସା ଲୋଡ଼ା । ଯଦି ଲୋଭ ଥା'ନ୍ତା, ତେବେ ଚାଉଳ ଓ ପଇସାର ପରିମାଣ ନିର୍ଦ୍ଧାର୍ଯ୍ୟ କରିଦିଅନ୍ତି କାହିଁକି ? ଲୋକେ ତ ବହୁତ ବେଶି ଦିଅନ୍ତେ ! ପ୍ରଶ୍ନର ଭିନ୍ନ ଦିଗ ଉପରେ ଭାବିଥିଲ ?" ହଂସାନନ୍ଦଙ୍କ ସରଳ ଉତ୍ତରରେ ଗୋବିନ୍ଦଙ୍କ ଜ୍ଞାନୋଦୟ ହେଲା ।





ଭାରତର ମନ୍ଦିର

# ଶ୍ରୀରଙ୍ଗମ୍

ପ୍ରାଚୀନ କାଳରେ ଅଯୋଧ୍ୟାରେ ଶ୍ରୀରାମଚନ୍ଦ୍ରଙ୍କ ପ୍ରାସାଦରେ ତାଙ୍କ ପୂର୍ବପୁରୁଷଙ୍କ ଦ୍ୱାରା ବିଷ୍ଣୁଙ୍କର ଯେଉଁ ଶାୟିତ ମୂର୍ତ୍ତି ପୂଜା ପାଉଥିଲେ, ସେହି ମୂର୍ତ୍ତି ଶ୍ରୀରଙ୍ଗମ୍‌ସ୍ଥିତ ଶ୍ରୀରଙ୍ଗନାଥ ମନ୍ଦିରରେ ପ୍ରତିଷ୍ଠିତ ହୋଇ କୁହାଯାଏ ।

ଲଙ୍କାରୁ ସୀତାଙ୍କୁ ଉଦ୍ଧାର କରି ରାମ ଯେତେବେଳେ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ତାଙ୍କ ସହ ଆସିଥିଲେ ଭକ୍ତ ବିଭୀଷଣ । ଶ୍ରୀରଙ୍ଗନାଥ ମୂର୍ତ୍ତି ପ୍ରତି ବିଭୀଷଣ ବିଶେଷ ଆକୃଷ୍ଟ ହେବାର ଦେଖି ଶ୍ରୀରାମଚନ୍ଦ୍ର ମୂର୍ତ୍ତିଟି ତାଙ୍କୁ ଉପହାର ଦେଲେ ।





କେତେକ ବିଶେଷ କାରଣ ଯୋଗୁଁ ମୂର୍ତ୍ତିଟିକୁ କେଉଁଠି ହେଲେ ତଳେ ନ ଥୋଇ ସିଧା ଲଙ୍କାକୁ ନେଇଯିବା ଆବଶ୍ୟକ ଥିଲା । କିନ୍ତୁ ବିଭୀଷଣ ଆଜିର ଶ୍ରୀରଙ୍ଗମ୍ ଦେଇ ଗଲାବେଳେ ମୂର୍ତ୍ତିଟି ତଳେ ଥୋଇ ଦେଲେ । ଥରେ ଥୋଇଦେବା ପରେ କିନ୍ତୁ ସେ ଆଉ ତାକୁ ଉଠାଇ ପାରିଲେ ନାହିଁ ।





ଶ୍ରୀରଙ୍ଗନାଥଙ୍କ ଉପସ୍ଥିତି ଯୋଗୁଁ ଶ୍ରୀରଙ୍ଗମ୍ ବିଖ୍ୟାତ ହେଲା । ଯୁଗ ଯୁଗ ଧରି ଏ ସ୍ଥାନରେ ଅବିରତ ଭକ୍ତ ସମାବେଶ ଘଟିଛି । ସେହି ଅସଂଖ୍ୟ ଭକ୍ତଙ୍କ ଭିତରେ ଥିଲେ ଦକ୍ଷିଣ ଭାରତର ବିଖ୍ୟାତ ଭକ୍ତ-ନାରୀ ଅଣ୍ଡାଲ । ସେ ମୂର୍ତ୍ତି ଭିତରେ ଦିନେ ଲୀନ ହୋଇଗଲେ ।

ମନ୍ଦିର ପ୍ରାଙ୍ଗଣ ନାନାଦି ସାଂସ୍କୃତିକ କାର୍ଯ୍ୟକଳାପ ପାଇଁ ବିଖ୍ୟାତ । ଏହି ପ୍ରାଙ୍ଗଣର ଏକ ମଣ୍ଡପ ଉପରେ ମହାକବି କମ୍ବନ୍ ଦ୍ୱାଦଶ ଶତାବ୍ଦୀରେ ତାଙ୍କ ରଚିତ ତାମିଲ ରାମାୟଣ ପ୍ରଥମେ ବିଦଗ୍ଧ ଶ୍ରୋତୃମଣ୍ଡଳୀ ଆଗରେ ପାଠ କରିଥିଲେ ।





ଦ୍ୱାଦଶରୁ ଷୋଡ଼ଶ ଶତାବ୍ଦୀ ଭିତରେ ଦିଲ୍ଲିର ସୁଲତାନ୍‌ମାନେ ବାରମ୍ବାର ଶ୍ରୀରଙ୍ଗମ୍ ମନ୍ଦିର ଆକ୍ରମଣ କରି ଏହାର ବହୁତ ଅନିଷ୍ଟ କରିଥିଲେ । ଥରେ ଜଣେ ସୁଲତାନ୍ ମୂର୍ତ୍ତି ନେଇଯିବାକୁ ଯୋଜନା କରିବାର ଜାଣି ଭକ୍ତମାନେ ମୂର୍ତ୍ତିକୁ ଚୁପଚାପ ସ୍ଥାନାନ୍ତର କରି-ଦେଇଥାନ୍ତି । ଅଗତ୍ୟା ସୁଲ୍‌ତାନ୍ ବିଅଁଙ୍କ ଚଳନ୍ତି ପ୍ରତିମାକୁ ନେଇଗଲେ ।

ଏଥିରେ ବ୍ୟଥିତ ହୋଇ ସନ୍ଥ ରାମାନୁଜ ସୁଲତାନ୍‌ଙ୍କୁ ଯାଇ ଭେଟିଲେ । ଏହି ମହାପୁରୁଷଙ୍କ ବ୍ୟକ୍ତିତ୍ୱ ଓ ଭକ୍ତିରେ ଚମତ୍କୃତ ହୋଇ ସୁଲତାନ୍ ତାଙ୍କୁ ଚଲନ୍ତି ପ୍ରତିମାକୁ ନେଇଯିବାରେ ବାଧା ଦେଲେ ନାହିଁ । ବଳବାନର ଦମ୍ଭ ଉପରେ ଏହା ହେଲା ଭକ୍ତର ବିଜୟ ।






କିନ୍ତୁ ଗୋଟିଏ ଅପ୍ରତ୍ୟାଶିତ ବ୍ୟାପାର ଘଟିଲା । ସୁଲତାନ୍‌ଙ୍କ କନ୍ୟା ସେ ଚଲନ୍ତି ପ୍ରତିମାକୁ ଅତ୍ୟନ୍ତ ଭଲ ପାଇବାକୁ ଆରମ୍ଭ କରିଥିଲେ । ସେ ପ୍ରତିମାକୁ ଅନୁସରଣ କରି ଶ୍ରୀରଙ୍ଗମ୍ ଯାଏ ଆସିଲେ । ସେହି ଅସାଧାରଣ ଭକ୍ତ ଯୁବତୀର ସ୍ମୃତିରେ ଶ୍ରୀରଙ୍ଗମ୍ ମନ୍ଦିରରେ କିଛି ମୁସଲମାନ ପୂଜା ବିଧି ପ୍ରଚଳନ କରା ଯାଇଛି ।

ଥରେ ମନ୍ଦିରର ଜଣେ ଦେବଦାସୀ ଗୋଟିଏ ଷଡ଼ଯନ୍ତ୍ରର ମନ୍ତ୍ରଣା ଶୁଣିପାରିଲା । ସୁଲତାନ୍‌ଙ୍କର ଜଣେ ସେନାପତି ମନ୍ଦିର ଲୁଣ୍ଠନ ଓ ଧ୍ୱଂସ କରିବାର ଯୋଜନା କରୁଥାଏ । ସେ ସେନାପତି ଉକ୍ତ ଦେବଦାସୀ ପ୍ରତି ବହୁତ ଅନୁରକ୍ତ ଥିଲା ।





ଦେବଦାସୀ ଜଣକ ସେ ସେନାପତିଙ୍କୁ କିଛି ଗୋପନ ସମ୍ପଦ ଦେଖାଇ ଦେବ ବୋଲି କହି ମନ୍ଦିରର ଅନ୍ୟତମ ଶିଖର ଉପରକୁ ନେଇଗଲା । ସେଠାରେ ଗୋଟିଏ ପଥର ଅଳ୍ପ ଖସି ରହିଥାଏ । ନିଜ ଜୀବନ ବିପନ୍ନ କରି ଦେବଦାସୀ ସେନାପତିଙ୍କୁ ସେ ପଥର ଉପରକୁ ନେଇଯାଇ ତଳକୁ ଠେଲିଦେଲା । ସେନାପତି ମଲେ ।

ସାତ ପ୍ରାଚୀର ଭିତରେ ଅବସ୍ଥିତ ଏ ବିଶାଳ ମନ୍ଦିରର ସ୍ଥାପତ୍ୟ ଅତି ମନୋହର । ସହସ୍ର ସ୍ତମ୍ଭ ମଣ୍ଡିତ ଏକ ବିଶାଳ କକ୍ଷ ରହିଛି । ତହିଁ ଭିତରେ ଅସଂଖ୍ୟ କଳାକୃତି ! ମନ୍ଦିରର ବିମାନର ଆକୃତି ଓଁକାର ଭଳି ।





ଶ୍ରୀରଙ୍ଗମ୍ ମନ୍ଦିରରେ ସବୁଠାରୁ ବଡ଼ ପର୍ବ ହେଉଛି ବୈକୁଣ୍ଠ ଏକାଦଶୀ । ଦେବୀ ଏକାଦଶୀ ଯୋଗମାୟାଙ୍କର ଏକ ଅଂଶ । ସେ ମୁର ରାକ୍ଷସକୁ ବଧ କରିଥିଲେ । ସେ ରାକ୍ଷସ-ନିଧନ ଦିବସରେ ଏକ ବିଶେଷ ଉତ୍ସବ ଅନୁଷ୍ଠିତ ହୁଏ ।



# ଶାପେ ବର

ବୀମଳପୁର ସହରଠୁଁ ଅଳ୍ପ ଦୂରରେ ଶ୍ରାବଣୀ ଗ୍ରାମ । ସେ ଗାଁରେ ପାଖାପାଖି ରହୁଥିଲେ ରବି, ସୁନୀଲ ଓ ହରିଦାସ । ସୁନୀଲ ଘର ଅନ୍ୟ ଦୁଇ ଘରର ମଝିରେ ।

ସେ ତିନିଜଣ ଗୋଟିଏ ଦୂର ଗାଁରୁ ଉଠି ଆସି ସେଠାରେ ନୂଆ କରି ଘର ତୋଳିଥାନ୍ତି । ସେମାନେ ଉଠି ଆସିବାର କାରଣ ସେମାନଙ୍କ ମୂଳ ଗାଁ ବନ୍ୟାରେ ଭାସିଗଲା । ସେଠି ରହିବା ନିରାପଦ ନୁହେଁ ବୋଲି ସେ ଗାଁର ସବୁ ଲୋକ ଭିନ୍ନ ଭିନ୍ନ ସ୍ଥାନକୁ ଉଠିଗଲେ ।

ରବି ଓ ହରିଦାସ ସାଧାରଣ ନିମ୍ନ ମଧ୍ୟବିତ୍ତ ଶ୍ରେଣୀର ଲୋକ । ତେବେ ସୁନୀଲର ବାପା ଛୋଟିଆ ଜମିଦାରଟିଏ ଥିଲେ । ସୁନୀଲ ବେଳକୁ ଜମିଦାରି ଉଠି ଯାଇଥାଏ । କିନ୍ତୁ ସେ ଜମିଦାର ଭଳି ବ୍ୟବହାର କରୁଥାଏ । ସେମିତି ପୋଷାକ ପିନ୍ଧୁଥାଏ ଏବଂ ଅନ୍ୟମାନଙ୍କୁ ତାଚ୍ଛଲ୍ୟ କରୁଥାଏ ।

ପାଖାପାଖି ଘର ହୋଇଥିବାରୁ ତିନିହେଁ ମିଳିମିଶି ଚଳିବେ, ଏହାହିଁ ଆଶା କରାଯାଉଥିଲା । କିନ୍ତୁ ସୁନୀଲର ବ୍ୟବହାର ଯୋଗୁଁ ତାହା ସମ୍ଭବ ହେଲା ନାହିଁ । ଅବଶ୍ୟ ରବି ଓ ହରିଦାସ ଭିତରେ ବେଶ୍ ସଦ୍ଭାବ ଥାଏ ।

ସୁନୀଲ ଭୀଷଣ ଖଳ ପ୍ରକୃତିର ଯୁବକ । କଳି ତକରାଳ ନ କଲେ ଦିନଟି ବୃଥା ଗଲା ବୋଲି ସେ ମନେ କରେ । ରବି ଓ ହରିଦାସ ତ ପାଖରେ ଥାନ୍ତି । ତେଣୁ ସେମାନଙ୍କୁ ଚିଡ଼ାଇବାକୁ ଚେଷ୍ଟା କରିବାରେ ସେ ଅନେକ ସମୟ ବ୍ୟୟ କରୁଥାଏ । ଥରେ ଥରେ ରବି ତା' ସହ ଝଗଡ଼ା କରୁଥାଏ । କିନ୍ତୁ ହରିଦାସକୁ ସେ କେବେହେଲେ ରଗାଇ ପାରେ ନାହିଁ ।



ମଝିରେ ମଝିରେ ରବି ହରିଦାସକୁ କହେ, "ଭାଇ ! ସୁନୀଲର ଦୁଷ୍ଟାମି ଆଉ ସହି ହେଉନାହିଁ । ଚାଲ, ଆମେ ଦୁହେଁ ମିଶି ତାକୁ ପାନେ ଦେବା ।"

ହରିଦାସ ହସି ଦେଇ କହେ, "ଭୁକିବା ହେଲା କୁକୁରର ପ୍ରକୃତି । ତା' ବୋଲି କ'ଣ ଆମେ ଭୁକିବା ? ଆମେ ଚୁପ୍ ରହିବା । ସେ ବଳେ ବଳେ ଆମଠୁଁ ଉତ୍ସାହ ନପାଇ ତୁନି ପଡ଼ିବ ।"

ରବି ହରିଦାସର ଜ୍ଞାନକୁ ତାରିଫ୍ କରେ, କିନ୍ତୁ ତା' ମନ ମାନେ ନାହିଁ । ସୁନୀଲ ତା' ନିଜ ଘରର ଅଳିଆତକ ନେଇ ରବି ଘର ସାମ୍ନାରେ ଥୋଇ ଦିଏ । ଦିନେ ରବି କ'ଣ କଲା ନା ତା' ନିଜ ଘରର ଅଳିଆ ଏବଂ ସୁନୀଲ ଥୋଇଥିବା ଅଳିଆ ସବୁତକ ନେଇ ଚୁପ୍‌ଚୁପ୍ ହରିଦାସ ଘର ଆଗରେ ଥୋଇ ଦେଲା । ସୁନୀଲ ସେ କାମ କରିଛି ଭାବି ହରିଦାସ ସୁନୀଲ ସହ ଝଗଡ଼ା କରିବ, ଏଇଆ ଥିଲା ତା'ର ମତଲବ୍ । କିନ୍ତୁ ଦେଖିବା ବେଳକୁ ହରିଦାସ ନୀରବରେ ସବୁତକ ଅଳିଆ ନେଇ ଯାଇ ଦୂରରେ ଥିବା ଅଳିଆ ଗଦାରେ ପକାଇଦେଇ ଆସିଲା । ରବି ପଚାରିବାରୁ କହିଲା, "ଆରେ ଭାଇ, ମୋ ଘରର ଅଳିଆତକ ନେଇଯାଇ ଦୂରରେ ଫୋପାଡ଼ିବାକୁ ଯେତିକି ସମୟ ଲାଗିଥାନ୍ତା, ଏ ସମୁଦାୟ ଅଳିଆ ବୁହେଇ ଦେବାକୁ ବି ସେତିକି ସମୟ ଲାଗିଲା । ମୁଁ ଏବେ ଏ ପାଇଁ କାହା ସହ କଳି କରିବାକୁ ଯିବ କାହିଁକି ?"

ସୁନୀଲ ଗୀତ ବାନ୍ଧି ରବି ଓ ହରିଦାସଙ୍କୁ ଚିଡ଼ାଇବାକୁ ଚେଷ୍ଟା କରେ । ତାହା ରବିକୁ ଅସହ୍ୟ ଲାଗେ । ସେ ହରିଦାସ ପାଖରେ ଅଭିଯୋଗ କଲେ, ହରିଦାସ କହେ, "ଆମେ ବରଂ ଏମିତି ଭାବରେ କାର୍ଯ୍ୟବ୍ୟସ୍ତ ରହିବା, ଯାହା ଦ୍ୱାରା ସୁନୀଲ କ'ଣ କହୁଛି ନ କହୁଛି ସେଥିପ୍ରତି ଆମର ମୋଟେ ଧ୍ୟାନ ଯିବନାହିଁ ।"

ଦୁହେଁ ସହରରେ ଗୋଟିଏ ବେପାର କରିବାକୁ ସ୍ଥିର କଲେ । ରବି ପାଖରେ ଟଙ୍କା ଥିଲା । ହରିଦାସ ପାଖରେ ନଥିଲା । ହରିଦାସ ସହରର ଗୋଟିଏ ସମବାୟ

ଅନୁଷ୍ଠାନରୁ ଟଙ୍କା କରଜ ଆଣିବାକୁ ଗଲ । ସେମାନେ ତାକୁ ଦୁଇଦିନ ପରେ ଆସିବାକୁ କହିଲେ । ଦୁଇଦିନ ପରେ ଯେତେବେଳେ ହରିଦାସ ଗଲା, ସେମାନେ ତାକୁ ବିନା ଦ୍ୱିଧାରେ ଟଙ୍କା ଦେଇ ଦେଲେ । ବେପାର ଆରମ୍ଭ ହେଲ ।

ସେ ଦୁହେଁ ବେପାର କରିବାକୁ ଚେଷ୍ଟା କରୁଛନ୍ତି ଜାଣି ସୁନୀଲ ସେମାନଙ୍କୁ ବହୁତ ଥଟ୍ଟା କଲା । ସେମାନେ ବେପାରରେ ଠକି ହୋଇଯିବେ ବୋଲି ତା'ର ଦୃଢ଼ ଧାରଣା ହୋଇଥାଏ । ନିଜେ ସେ କିଛି କରେ ନାହିଁ ଓ ତେଣୁ ଧିରେ ଧିରେ ଜମିଦାରି କ୍ଷତିପୂରଣରୁ ମିଳିଥିବା ଟଙ୍କାତକ ଶେଷ ହୋଇ ଆସୁଥାଏ, ସେ ପାଇଁ ତା'ର ଶୋଚନା ନଥିଲ ।

ଦୁଇ ତିନିବର୍ଷ ଭିତରେ ଦୁହେଁ ବେପାରରେ ଏତେ ଲାଭ କଲେ ଯେ ନିଜ ନିଜର ପୁରୁଣା ମାଟି ଘର ସ୍ଥାନରେ ସେମାନେ ଛୋଟ ଛୋଟ ଦୁଇଟି କୋଠା ବନାଇଲେ । ମଝିରେ ସୁନୀଲ ତା' କୁଡ଼ିଆରେ ରହିଥାଏ । ଅବସ୍ଥାରେ ଏ ପରିବର୍ତ୍ତନ ଯୋଗୁଁ ହଠାତ୍ ତା' ମୁଣ୍ଡ ଖରାପ ହୋଇଗଲ । ସେ ଦିନେ ରାସ୍ତା ମଝିରେ ଚିତ୍କାର କରିବାର ସମସ୍ତେ ଦେଖିଲେ । ସେଦିନ ହାଟ ପାଳି । ଗାଁ ଗଣ୍ଡାରୁ ଯେପରି ଅନେକ ଲୋକ ଆସିଥାନ୍ତି, ସହରରୁ ବି ସେମିତି କିଛି ଲୋକ ମଫସଲ ହାଟରୁ ସଜ ପନିପରିବା କିଣିବାକୁ ଆସିଥାନ୍ତି । ସେମାନେ ସମସ୍ତେ ସେଠାରେ ସୁନୀଲକୁ ଘେରି ଯାଇ ରଙ୍ଗ ଦେଖୁଥାନ୍ତି ।



ସୁନୀଲ କହୁଥାଏ, "ତିନିବର୍ଷ ତଳେ ଗୋଟାଏ ଭିଖାରି ଆସି ଏଠି ଥିଲାବାଲା ଲୋକ କିଏ ବୋଲି ପଚାରିଲା । ମୁଁ ଭିଖାରିକୁ ହରିଦାସ ଘର ଦେଖାଇ ଦେଇ କହିଲି କି ତା' ଘରେ ବହୁତ ସୁନା ରୂପା ଅଛି । ଲୋକଟା କିନ୍ତୁ ତା' ଘରକୁ ନଯାଇ ଫେରିଗଲା ।"

ସୁନୀଲ ଏତିକି କହିବା ମାତ୍ରେ ଭିଡ଼ ଭିତରୁ ଜଣେ ଭଦ୍ରଲୋକ ହରିଦାସ କାନରେ କହିଲେ, "ମୁଁ ସମବାୟ ସମିତି ତରଫରୁ ତମ ଅବସ୍ଥା ବୁଝିବାକୁ ଛଦ୍ମବେଶରେ ଆସିଥିଲି । ଏ ଲୋକ ତମ ଘରେ ବହୁତ ସୁନାରୁପା ଅଛି ବୋଲି କହିବାରୁ ଆମେ ତମକୁ ବିନା ଦ୍ୱିଧାରେ ଋଣ ଦେଲୁଁ ।"

ସୁନୀଲ ତେଣେ ଚିତ୍କାର କରି କହୁଥାଏ, "ସେଦିନ ଜଣେ ଧୋବଧାଉଳିଆ ଭଦ୍ରଲୋକ ରବି ଘରକୁ ଦେଖାଇ ସେ ଘରେ କିଏ ରହନ୍ତି ପଚାରିବାରୁ ମୁଁ କହିଲି କି ସେ ଘରେ ଜଣେ ବସନ୍ତ ରୋଗୀ ଅଛି । ସାବଧାନ ! ସତରେ ଦେଖିବା ବେଳକୁ ମୋ ଘରୁ ଚୋରି ହୋଇ ଯାଇଛି । ସେ ଧୋବଧାଉଳିଆ ନିଶ୍ଚେ ଚୋର ! ରବି ଘରୁ ଲୋକଟା ଚୋରି କରିଥାନ୍ତା । ବସନ୍ତ ହେଇଁବ ବୋଲି ଡରରେ ସେ ଘରକୁ ଗଲା ନାହିଁ । ପଶିଲା ମୋହରି ଘରେ । ଚୋରଟା ଯାହା ମଲା ନାହିଁ !" ସୁନୀଲ ଚିତ୍କାର କରୁଥାଏ ।

ସୁନୀଲ ନିଜ କପାଳକୁ ନିନ୍ଦୁଥାଏ ଓ ପାଟି କରି ସମସ୍ତଙ୍କୁ ଅଭିସମ୍ପାତ ଦେଉଥାଏ । ତା'ର ସମ୍ପର୍କୀୟ ଲୋକମାନେ ଆସି ତାକୁ ଭିଡି ନେଇଗଲେ ।

ହରିଦାସ ଓ ରବି ବୁଝିଲେ ଯେ ସୁନୀଲ ସେମାନଙ୍କ ପ୍ରତି ଅସୂୟା ଭାବ ଯୋଗୁଁ ଯାହାକୁ ଯାହା କହିଥିଲା, ସେସବୁ ସେମାନଙ୍କ ଉପକାରହିଁ କଲା !

"ବୁଝିଲ, ସେ ବାସ୍ତବିକ ପାଗଳ ହୋଇ ନାହିଁ । ଖାଲି ଈର୍ଷା ଯୋଗୁଁ ପାଗଳ ଭଳି ବ୍ୟବହାର କରୁଛି ।" ହରିଦାସ ରବିକୁ ବୁଝାଇ ଦେଲା ।





# ଶିବଲୀଳା

ପାର୍ବତୀ ଯେତେବେଳେ ଭକ୍ତ ଚନ୍ଦତୋଣ୍ଡ୍ରକୁ ଦେଖିବା ପାଇଁ ଇଚ୍ଛା ପ୍ରକାଶ କଲେ ସେତେବେଳେ ଶିବ ଅନୁକୂଳ ସମୟ ପାଇଁ ଅପେକ୍ଷା କରିବାକୁ କହିଲେ । ଏଣେ ଶିବ ଇନ୍ଦ୍ରଙ୍କୁ କହିଲେ ବହୁଦିନ ଧରି ବର୍ଷା କରିବାକୁ । କାଞ୍ଚିପୁରରେ ଏକୋଇଶ ଦିନ ଧରି ବର୍ଷା ହେଲା । ବାଇଶ ଦିନରେ ବର୍ଷା ବନ୍ଦ ହେଲା । ଚନ୍ଦତୋଣ୍ଡ୍ର କିନ୍ତୁ ସବୁଦିନେ ଶିବଭକ୍ତ ଅତିଥିଙ୍କୁ ଖାଇବାକୁ ଦେଉଥାଏ । ଗୋଟିଏ ଦିନ ମଧ୍ୟ ଭକ୍ତ ଆସିବାରେ ଊଣା ନ ଥାଏ ।

ଏଣେ ଖାଦ୍ୟଦ୍ରବ୍ୟ ସରି ଆସୁଥାଏ । ବର୍ଷା ଯୋଗୁ ସେ ବାହାରକୁ ଯାଇପାରୁ ନଥାଏ । କିନ୍ତୁ ପ୍ରତିଦିନ ନିହାତି ପକ୍ଷରେ ଜଣେହେଲେ ଶିବଭକ୍ତ ଖାଇଲେ ତା'ପରେ ଚନ୍ଦତୋଣ୍ଡ୍ର ନିଜେ ଖାଦ୍ୟ ଗ୍ରହଣ କରେ । ସେଦିନ କେହି ଭକ୍ତ ଆସିଲେ ନାହିଁ । ସେ ଘରୁ ବାହାରି ରାସ୍ତାଗଳିରେ ଶିବଭକ୍ତ ଖୋଜୁଥାଏ ।

ଅନେକଦୂର ଯାଇ ସେ ଗୋଟିଏ ଗଛ-ପାଖରେ ଏକ ଭଙ୍ଗା ଘର ମଧ୍ୟରେ ଜଣେ ନିପଟ ବୁଢ଼ା ଓ ବୁଢ଼ୀଙ୍କୁ ଦେଖିଲା । ବୁଢ଼ା ବାଘଛାଲ ଉପରେ ଶୋଇଥାଏ । ବୁଢ଼ୀ ତା' ଗୋଡ଼ ଘସି ଦେଉଥାଏ । ବାର୍ଦ୍ଧକ୍ୟ ହେତୁ ବୁଢ଼ୀ ଦେଖିପାରୁ ନଥାଏ ।

ହାବଭାବରୁ ଚନ୍ଦତୋଣ୍ଡ୍ର ବୁଝିଲା କି ଏମାନେ ଶିବଭକ୍ତ । ନିକଟକୁ ଯାଇ କହିଲା, "ଆଜି ଆପଣ ଦୁଇଜଣ ମୋ ଘରେ ଅତିଥି ହୋଇ ମୋତେ କୃତାର୍ଥ କରନ୍ତୁ ।"




ବୃଦ୍ଧ କହିଲା, "ପୁଅ, ବର୍ଷେ ହେଲା ମୁଁ ନାଗଦ୍ୱାରରେ ରହି ଶିବଙ୍କ ପାଇଁ ତପସ୍ୟା କରୁଛି । ସେ ବ୍ରତର ସମାପ୍ତି ନରମାଂସ ଦ୍ୱାରହିଁ ସମ୍ଭବ । ସେ ମନୁଷ୍ୟ ବ୍ରାହ୍ମଣ, କ୍ଷତ୍ରିୟ ବା ବୈଶ୍ୟ ହେବା ଆବଶ୍ୟକ । ସେ ମନୁଷ୍ୟ ଅଳ୍ପ ବୟସର ହେବା ଦରକାର ଓ ତାକୁ ତା' ମାତାପିତାହିଁ ହାଣି ସେହି ମାଂସ ରାନ୍ଧି ମୋତେ ଖାଇବାକୁ ଦେବେ । ତା'ଛଡ଼ା ଖାଇବା ବେଳେ ସେହି ମନୁଷ୍ୟର ପିତା ମଧ୍ୟ ଆମ ସହିତ ବସି ସେହି ମାଂସ ଭୋଜନ କରିବ ।"

"ମହାଶୟ, ମୋ ନାମ ଚନ୍ଦ୍ରଦ୍ରୋଣ । ମୋର ବ୍ରତ ହେଉଛି ଶିବଭକ୍ତଙ୍କର ବ୍ରତ ପୂରଣ କରିବା । ଆପଣଙ୍କ ସର୍ତ୍ତ ଅନୁସାରେ ସବୁ ପୂରଣ ହେବ । କୃପା କରି ଭୋଜନ ପାଇଁ ମୋ ଘରକୁ ଆସନ୍ତୁ ।" ଚନ୍ଦ୍ରଦ୍ରୋଣ କହିଲା ।

"ତମେ ତ କଥା ଦେଇଦେଲ ଯେ ମୋର ବ୍ରତ ପୂର୍ଣ୍ଣ କରିବ । କିନ୍ତୁ ମନେରଖ ଏହି ସର୍ତ୍ତକୁ ତୁମ ପତ୍ନୀ ମଧ୍ୟ ମାନିନେବା ଉଚିତ୍ ।" ବୃଦ୍ଧ କହିଲା ।

ତତ୍‌କ୍ଷଣାତ୍ ଚନ୍ଦ୍ରଦ୍ରୋଣ ଘରକୁ ଫେରି ପତ୍ନୀଙ୍କୁ ସବୁକଥା ଜଣାଇଲା । ପତ୍ନୀ ସେଥିରେ ସମ୍ମତ ହେଲା ।

ଇତମଧ୍ୟରେ ଛଦ୍ମବେଶୀ ଶିବ ଚନ୍ଦ୍ରଦ୍ରୋଣର ପୁତ୍ର ଶିରିଆଲ୍‌ର ପାଠଶାଳରେ ପହଞ୍ଚି ତାକୁ କହିଲେ, "ଦେଖ ପୁଅ, ତୋ ପିତା ବଡ଼ ଦୁଷ୍ଟ ଓ ନିଷ୍ଠୁର । ସେ ଜଣେ ଅତିଥିଙ୍କୁ କଥା ଦେଇଛି ତୋତେ ମାରି ତୋ ମାଂସ ରାନ୍ଧି ତାଙ୍କୁ ଖାଇବାକୁ ଦେବ । ତେଣୁ ତୁ ଏଠାରୁ ଲୁଚି ଶୀଘ୍ର ଦୂରକୁ ପଳାଇ ଯା ।

"ମହାଶୟ, ଆପଣଙ୍କ କଥା ତ ମୋତେ ଖୁବ୍ ଆଶ୍ଚର୍ଯ୍ୟଜନକ ଲାଗୁଛି । ଶାସ୍ତ୍ର ବଚନ ଅଛି, "ପରୋପକାରାର୍ଥମିଦଂ ଶରୀରମ୍" । ତା'ହେଲେ କ'ଣ ଆପଣଙ୍କ ବିଗୃରରେ ଦଧିଚୀ ଓ ଶିବି ପ୍ରଭୃତି ଅଜ୍ଞାନୀ ଥିଲେ ?" ବାଳକ ଶିରିଆଲ୍ କହିଲା ।

କିଛି ସମୟ ପରେ ଚନ୍ଦ୍ରଦ୍ରୋଣ ସେହି ଜୀର୍ଣ୍ଣ ଘରକୁ ଫେରି ଆସି ବୁଢ଼ାକୁ କାନ୍ଧରେ



ବସାଇଲା ଓ ଅନ୍ଧ ବୁଢ଼ୀର ହାତ ଧରି ଗୃହ ଗୃହ ଆସି ଘରେ ପହଞ୍ଚିଲା।

ବାପା ମା' ଦୁହେଁ ଶିରଆଲ୍‌କୁ ସ୍ନାନ କରାଇ ଦିବ୍ୟ ଅଳଙ୍କାର ଓ ବସନ ସବୁ ପିନ୍ଧାଇଲେ ଏବଂ କହିଲେ, "ବତ୍ସ, ଶିବ-ଭକ୍ତଙ୍କର ଆହାର ହେବାପାଇଁ ତୁ ନିଜକୁ ପ୍ରସ୍ତୁତ କର।"

"ପ୍ରସ୍ତୁତ ପିତା। ମୁଁ ଆନନ୍ଦର ସହିତ ସେହି ପରମ ମୂହୂର୍ତ୍ତକୁ ଅପେକ୍ଷା କରୁଛି। ଏହାଠାରୁ ବଳି ପୁଣ୍ୟ କର୍ମ ଆଉ କ'ଣ ଅଛି ?" ବାଳକ ଶିରଆଲ୍ କହିଲା।

ତା'ପରେ ଚିରୁତୋଣ୍ଡ ଓ ତା'ର ସ୍ତ୍ରୀ ଶିବ ନାମ ଜପି ଜପି ସେହି ଭୟଙ୍କର କାର୍ଯ୍ୟ ଶେଷ କଲେ। ପରେ ସେହି ମାଂସ ରାନ୍ଧି ଅତିଥିଙ୍କୁ ପରଷିଲେ। ଠିକ୍ ସେତିକିବେଳେ ବୃଦ୍ଧ କହିଲେ, "ବତ୍ସ ଚିରୁତୋଣ୍ଡ, ତୁ ଓ ତୋ ପୁଅ ଆସ ଆମ ସହିତ ଖାଇବ।"

ପ୍ରଥମେ ଚିରୁତୋଣ୍ଡ କିଛି ବୁଝିପାରିଲା ନାହିଁ। ତେଣୁ ସେ କହିଲା, "ପୁଅ ତ ଏବେ ଛୁଆଟିଏ ନାହିଁ। ଆପଣ ଖାଇବା ଆରମ୍ଭ କରନ୍ତୁ।"

ବୃଦ୍ଧ କହିଲେ, "ବତ୍ସ, ତୋ ସ୍ତ୍ରୀକୁ କହ; ତୋ ପୁଅର ନାମ ଧରି ଉଚ୍ଚ ସ୍ୱରରେ ଡ଼ାକୁ। ଯେଉଁଠି ଥିବ ଆସିବ।' ସେ ନ ଆସିଲେ ଆମେ କପରି ଖାଇବା ?"

ତତ୍‌କ୍ଷଣାତ୍ ଚିରୁତୋଣ୍ଡର ପତ୍ନୀ ଡାକି କହିଲା, "ଶିରଆଲ୍, ବାପା ତୁ କେଉଁଠି ଅଛୁ ଆସ।" ଶବ୍ଦ ଶୁଣି ବାହାରୁ ଛୁଆଟି ଶିରଆଲ୍ ଦୌଡ଼ ଦୌଡ଼ ଆସି ପହଞ୍ଚିଲା।

ପୁଅକୁ ଦେଖି ଚିରୁତୋଣ୍ଡ ଆଶ୍ଚର୍ଯ୍ୟ ହୋଇଗଲା। ତା'ପରେ କ'ଣ ଦେଖିଲା ? ଦେଖିଲା ବୁଢ଼ାବୁଢ଼ୀଙ୍କ ସ୍ଥାନରେ ସେଠାରେ ବିରାଜମାନ ହୋଇଛନ୍ତି ସ୍ୱୟଂ ପରମେଶ୍ୱର ଓ ଦେବୀ ପାର୍ବତୀ। ସେମାନେ ଅତ୍ୟନ୍ତ ପ୍ରସନ୍ନତା ପୂର୍ବକ ଚିରୁତୋଣ୍ଡ ଓ ତା'ର ପରିବାରକୁ ଆଶିର୍ବାଦ କଲେ ଓ ଚିରୁତୋଣ୍ଡର ପୂର୍ବଜନ୍ମ ବୃତ୍ତାନ୍ତ ଶୁଣାଇଲେ।

ପ୍ରାଚୀନ କାଳରେ ଦାକ୍ଷିଣାତ୍ୟରେ ଏକ ବିରାଟ ଜଙ୍ଗଲ ପ୍ରଦେଶ ଥିଲା। ସେଥିରେ

କେତେଗୁଡ଼ିଏ ଗ୍ରାମ ଓ ଛୋଟ ଛୋଟ ନଗର ମଧ୍ୟ ଥିଲା । ଜଣେ ଶବର ରାଜା ମଧ୍ୟ ଥିଲେ । ନଗରର ନାମ ଥିଲା ଉଜ୍ଜୁମ୍ବୁ । ଶବରମାନେ ଶିକାର କରି ଓ ଗୃହବାସ କରି ପେଟ ପୋଷୁଥିଲେ ।

ଶବର ରାଜାଙ୍କ ନାମ ଥିଲା ନାଥନାଥ । ତାଙ୍କର ଥିଲେ ତଣ୍ଡୀ ନାମରେ ରାଣୀ ଓ ତଲଜୁ ନାମରେ ଗୋଟିଏ ପୁଅ । ତଲଜୁ ଧନୁର୍ବିଦ୍ୟାରେ ଥିଲେ ପାରଙ୍ଗମ । ବୟାଳିଶ ଦିନ ମଧ୍ୟରେ ସେ ସକଳ ପ୍ରକାର ଧନୁର୍ବିଦ୍ୟାରେ ସିଦ୍ଧି ଲାଭ କଲେ । ଉଡ଼ିଯାଉଥିବା ପକ୍ଷୀଙ୍କୁ ମଧ୍ୟ ସେ ତୀର ମାରି ଖସାଇ ପାରୁଥିଲେ ।



ଥରେ ପ୍ରଜାମାନେ ରାଜାଙ୍କୁ ଅନୁରୋଧ କଲେ ଯେ ଯୁବରାଜଙ୍କୁ ନେଇ ଶିକାର କରିବାକୁ ଯିବେ । ରାଜା ବହୁ ବହୁ ସୈନ୍ୟ, କୁକୁର, ଖାଦ୍ୟସାମଗ୍ରୀ ଓ ଘୋଡ଼ା ଆଦି ସବୁ ଦେଇ ସେମାନଙ୍କୁ ଶିକାର କରିବାକୁ ପଠାଇଲେ । ସେମାନେ ଜଙ୍ଗଲରେ ତମ୍ବୁ ପକାଇ କିଛିଦିନ ଧରି ଶିକାର କରୁଥା'ନ୍ତି ।

ଦିନେ ଶିକାର ପଛରେ ଦୌଡ଼ି ଦୌଡ଼ି ତଲଜୁ କ୍ଳାନ୍ତ ହୋଇ ଗୋଟିଏ ଗଛ ଛାଇରେ ଶୋଇ ପଡ଼ିଥା'ନ୍ତି । ସ୍ୱପ୍ନ ଦେଖିଲେ ଜଣେ ମହାପୁରୁଷ ମୁଣ୍ଡରେ ଜଟା, ବ୍ୟାଘ୍ରଚର୍ମ ଆଦି ପିନ୍ଧିଥା'ନ୍ତି, ଆସି ତଲଜୁଙ୍କୁ ବଡ଼ ସ୍ନେହରେ କହିଲେ, "ବତ୍ସ, ଏହି ନିକଟରେ ଥିବା ସୁବର୍ଣ୍ଣମୁଖୀ ନଦୀ କୂଳରେ ଗୋଟିଏ ବଟବୃକ୍ଷ ଅଛି । ତା' ତଳେ ଗୋଟିଏ ଶିବଲିଙ୍ଗ ଅଛି । ତୁ ସେଠାକୁ ଯାଇ ତାକୁ ପୂଜା କର ।"

ରାଜକୁମାର ତଲଜୁ ଚମକି ଉଠିଲେ, ନିଦ ଭାଙ୍ଗିଗଲା । ସେ ଶୁଣିବାକୁ ପାଇଲେ ଦୂରରୁ ତାଙ୍କ ଲୋକମାନଙ୍କର କୋଳାହଳ । ଦେଖିଲେ ହଠାତ୍ ଗୋଟିଏ ବାର୍ହା ଜଙ୍ଗଲରୁ ବାହାରି ଦୌଡ଼ି ପଳାଉଛି । ତଲଜୁ ଧନୁରେ ତୀର ଯୋଖିଲେ । ହେଲେ ବାର୍ହାଟି କିଛିଦୂର ଅଗ୍ରସର ହୋଇ କୁଆଡ଼େ ଉଭାନ୍ ହୋଇଗଲା । ବାର୍ହା ପଛରେ ଗୋଡ଼ାଇ ଗୋଡ଼ାଇ ତଲଜୁ ଯାଇ ଦେଖିଲେ ଯେଉଁଠି ସେ ଅଦୃଶ୍ୟ ହୋଇଗଲା ସେଠାରେ ବଟବୃକ୍ଷ ତଳେ ଏକ ପ୍ରାଚୀନ ମନ୍ଦିର ମଧ୍ୟରେ ଏକ

ଶିବଲିଙ୍ଗ ବିରାଜମାନ । ତିଲଉ ବୁଝିପାରିଲେ ଯାହା ସବୁ ଘଟିଲା ସବୁ ଶିବଙ୍କ ଲୀଳା । ତାଙ୍କ ମନ ଭିତରେ ସ୍ୱର ଉଠିଲା ଓ ଆଖି ଆନନ୍ଦାଶ୍ରୁରେ ଭରି ଉଠିଲା ।

ସେ ଭକ୍ତି ଗଦ୍‌ଗଦ୍ କଣ୍ଠରେ ବିନୟ ପୂର୍ବକ ହାତ ଯୋଡି କହିଲେ, "ହେ ଭଗବାନ୍, ଏହି ଭୟଙ୍କର ଅରଣ୍ୟ ପ୍ରଦେଶରେ ଘୋର ଉପାସରେ କାହିଁକି ଆପଣ ବସି ରହିଛନ୍ତି? ଏଠି କି ପ୍ରତିଦିନ କିଏ ଆପଣଙ୍କ ପୂଜା କରିବ । ଏବେ ଚାଲନ୍ତୁ ଉଜ୍ଜୟିନୀରେ ରହିବେ । ସେଠାରେ ମୁଁ ଓ ମୋ ଭଉଣୀମାନେ ଆପଣଙ୍କୁ ପୂଜା କରିବୁ । ନାନା ପ୍ରକାର ଫଳମୂଳ ଓ ଖାଦ୍ୟ ସବୁ ଆପଣଙ୍କୁ ନିବେଦନ କରିବୁ । ଆପଣ ନ ଗଲେ ମୁଁ ମଧ୍ୟ ଏଠାରୁ ଯାଉନାହିଁ ।" ତା'ପରେ ତିଲଉ ଆଖି ବନ୍ଦ କରି ଧ୍ୟାନରେ ବସିଲେ ।

କିଛି ସମୟ ପରେ ତିଲଉଙ୍କ ସାଥିମାନେ ଆସି ସେଠାରେ ପହଞ୍ଚି ପଚାରିଲେ, "ଯୁବରାଜ, ବାର୍‌ହାଟା ଏଇ ପଟକୁ ଦୌଡି ଆସିଲା । କୁଆଡ଼େ ଗଲା ?" ତିଲଉ ନିରୁତ୍ତର । ଆଖି ମଧ୍ୟ ଖୋଲିଲେ ନାହିଁ । ପରେ ସେମାନେ କହିଲେ, "ଚାଲ ଆମ ସହିତ ରାଜଧାନୀକୁ ଯିବ ।" ସେତେବେଳେ ତିଲଉ କହିଲେ, "ନା, ଏବେ ମୁଁ ଯିବି ନାହିଁ । ଏଠାରେ ଧ୍ୟାନରେ ବସିବି । ଭଗବାନ ଶିବ ଯେବେ ଯିବାକୁ ଇଚ୍ଛା କରିବେ ତାଙ୍କୁ ମୁଁ ସେତେବେଳେ ସାଙ୍ଗରେ ନେଇ ଯିବି । ଏବେ ତମେମାନେ ଫେରିଯାଅ ।"

ଏତକ କହି ସେ ପୁଣି ଆଖି ବନ୍ଦ କଲେ ।

ସେମାନେ ରାଜକୁମାର ତିଲଉଙ୍କ ସ୍ୱଭାବ ବିଷୟରେ ଆଗରୁ ଜାଣିଥିଲେ । ସେ ଯାହା ଥରେ କହନ୍ତି ତାହା ନିଶ୍ଚୟ କରନ୍ତି । ସେମାନେ ଆଉ ତାଙ୍କୁ ଫେରିଯିବା ପାଇଁ ବୁଝାଇବାର ବୃଥା ଚେଷ୍ଟା ନ କରି ରାଜାଙ୍କୁ ଖବର ଦେବାପାଇଁ ରାଜଧାନୀ ପ୍ରତ୍ୟାବର୍ତ୍ତନ କଲେ ।





# ବିଚିତ୍ର ଫାଶ

ପ୍ରାଚୀନ କାଳର କଥା । ଫ୍ରିଜିଆ ଦେଶରେ ଗୋର୍ଡିଅନ୍ ନାମରେ ଜଣେ କୃଷୀ ଯୁବକ ଥାଏ । ଦିନେ ସେ ତା'ର ବଳଦ-ଗାଡ଼ିରେ ବସି କୌଣସି ବ୍ୟବସାୟ ଉଦ୍ଦେଶ୍ୟରେ ନିଜ ଗ୍ରାମ ଛାଡ଼ି ସହରକୁ ଯାଉଥାଏ ।

କିଛିଦୂର ଯିବା ପରେ କାହୁଁ ଏକ ରାଜପକ୍ଷୀ ଆସି ତା' ଗାଡ଼ି ଉପରେ ଦୁଇ ବଳଦଙ୍କ ମଝିରେ ବସି ପଡ଼ିଲା । ଗ୍ରୀକ୍ ମାନଙ୍କ ମତରେ ଏହା ପରମ ସୌଭାଗ୍ୟର ଏକ ଲକ୍ଷଣ । ଯୁବକ ଖୁସି ହେଲା ।

ଠିକ୍ ସେଇ ସମୟରେ ଟେଲମସ୍ସ୍ ନଗରୀର ରାଜା ହଠାତ୍ ମରି ଯାଇଥା'ନ୍ତି ଓ ତାଙ୍କର କୌଣସି ଉତ୍ତରାଧିକାରୀ ନଥା'ନ୍ତି । ରାଜ୍ୟରେ ସମସ୍ତିଙ୍କ ମନରେ ପ୍ରଶ୍ନ କିଏ ରାଜା ହେବ । ଏହି ସମୟରେ ଜଣେ ସାଧୁଲୋକଙ୍କ ଭିତରେ ଦୈବୀ ପ୍ରବେଶ କରି ରାଜ୍ୟବାସୀଙ୍କୁ କହିଲେ, "ତୁମର ଭବିରାଜା ଗୋଟିଏ ବଳଦଗାଡ଼ିରେ ବସି ଆସୁଛନ୍ତି । ଗାଡ଼ି ଉପରେ ଗୋଟିଏ ରାଜପକ୍ଷୀ ଓ ଗାଡ଼ିରେ ତୁମ ରାଜ୍ୟର ଭବିରାଣୀ ମଧ୍ୟ ବସିଥିବେ ।"

ଜଣେ ଯୁବତୀ ସାଧୁଙ୍କ କଥା ଶୁଣିବା ମାତ୍ରେ ଦୌଡ଼ି ଦୌଡ଼ି ନଗର ବାହାରକୁ ଗଲା । ବିପରୀତ ଦିଗରୁ ଗାଡ଼ିଟିଏ ଆସୁଛି ଓ ଗୋଟିଏ ରାଜପକ୍ଷୀ ତା' ଉପରେ ବସିଛି ଦେଖି କହିଲା, "ବନ୍ଧୁ, ମୋତେ ବି ଗାଡ଼ି ଉପରେ ବସିବାକୁ ଦିଅ ।" ସରଳ ଯୁବକ ଗୋର୍ଡିଅନ୍ କିଛି ବୁଝି ନପାରି ଗାଡ଼ି ଅଟକାଇଲା । ଯୁବତୀଟି ଗାଡ଼ି ଉପରେ ଚଢ଼ି ଯାଇ ଯୁବକର ନିକଟରେ ବସି ପଡ଼ି କହିଲା, "ଦେଖ, ତମେ ଯଦି ମୋତେ ବିବାହ କରିବ ତ ମୁଁ ସନ୍ଧ୍ୟା ହେବା ପୂର୍ବରୁ ତୁମକୁ ଏକ ବିରାଟ ସୌଭାଗ୍ୟର ଅଧିକାରୀ କରାଇଦେଇ ପାରିବ ।"

ଯୁବକ ଉତ୍ତର ଦେଲା, "ତମେ ସୁନ୍ଦରୀ । ଯଦି ତୁମ ଭିତରେ ବିବେକବୋଧ ଥାଏ ତେବେ ତୁମକୁ ବିବାହ କରିବାରେ ମୋର ଆପତ୍ତି ନାହିଁ ।"

"ତମେ ମୋର ବିବେକବୋଧ ବିଷୟରେ ସନ୍ଦେହ କରିବାର କିଛି ଆବଶ୍ୟକତା ନାହିଁ ।" ଏତିକି କହି ଯୁବତୀଟି ସମଗ୍ର ଘଟଣା ତାକୁ କହିଲା । ତା'ପରେ ସେ କହିଲା, "ଦେଖ ସାଧୁ କହିଥିଲେ ଯୁବକ ନିକଟରେ ଯେଉଁ ଯୁବତୀ ବସିଥିବ ସେ ତୁମର ରାଜରାଣୀ । ମୁଁ ଯଦି ତୁମ ଗାଡ଼ିରେ ନ ବସେ ତେବେ ତିନି ଲକ୍ଷଣରୁ ଦୁଇଟି ମାତ୍ର ସେମାନେ ପାଇବେ ।" ଯୁବକ ଅଳ୍ପ ହସି ସ୍ୱୀକୃତି ଦେଲା ।

ନଗରବାସୀମାନେ ବହୁତ ସମୟ ଧରି ଅପେକ୍ଷା କରିଥିଲେ । ସାଧୁଙ୍କ କଥା ଅନୁସାରେ ସବୁ ମିଳି ଯାଉଛି । ତେଣୁ ସେମାନେ ଆନନ୍ଦରେ ନୂଆ ରାଜାରାଣୀଙ୍କର ଜୟଧ୍ୱନି ଓ ଅଭିଷେକ କଲେ ।

ରାଜା ହେବା ପରେ ଗୋର୍ଡିଆନ୍ ଭାବିଲେ କି ଗାଡ଼ିର ଦୁଇଟି କାଠର ସଂଯୋଗ ସ୍ଥଳୀ ଯେଉଁଠି ବାଜପକ୍ଷୀ ବସିଥିଲା, ତାହାହିଁ ତାଙ୍କର ମହାନ୍ ଭାଗ୍ୟ ଆଣିଦେବାରେ ସାହାଯ୍ୟ କରିଛି । ତେଣୁ ତାହାକୁ ସେ ପବିତ୍ର ମନେ କରି ଘରେ ସାଇତି ରଖିଲେ । ଦିନେ ଦୁଇକାଠର ସଂଯୋଗ ସ୍ଥଳୀରେ ସେ ଦଉଡ଼ିଟିଏ ବାନ୍ଧିଦେଲେ ଓ ଏକ ଫାଶ ପକାଇ ଦେଲେ ଯେପରିକି ତାହା ଫିଟିବ ନାହିଁ । ସେ ଫାଶ ଥିଲା ଅତ୍ୟନ୍ତ ବିଚିତ୍ର । ସେ କହିଥିଲେ କି ଯିଏ ଏ ଫାଶ ଫିଟାଇ ଦେବ ସେ ପୃଥିବୀର ସମ୍ରାଟ ହେବ ।

ସେହି ବିଚିତ୍ର ଫାଶ ଖୋଲିବାକୁ ଅନେକ ଲୋକ ଚେଷ୍ଟା କଲେ, କିନ୍ତୁ କେହି ପାରିଲେ ନାହିଁ । ବିଶ୍ୱବିଜେତା ହେବାର ସଂକଳ୍ପ କରିଥିବା ସିକନ୍ଦର ମଧ୍ୟ ସେହି ବିଚିତ୍ର ଫାଶକୁ ଖୋଲି ପାରି ନଥିଲେ । ସେ ଖୋଲିବାରେ ଅସଫଳ ହେବାରୁ ବିରକ୍ତ ହୋଇ ତାହାକୁ ଖଣ୍ଡାରେ ହାଣି ଦୁଇଖଣ୍ଡ କରି ଦେଇଥିଲେ ।





# ପିଶାଚଙ୍କ ଭବିଷ୍ୟତ୍‌ବାଣୀ

ହରିପୁର ଗ୍ରାମରେ ଶମ୍ଭୁ ନାମରେ ଜଣେ ବ୍ୟକ୍ତି ଥାଏ । ସେ ନିଜ ଘର ପାଖରେ ଥିବା ବଗିଚାରେ ଫୁଲଫଳ ଓ ନାନା ଫସଲ କରେ । ସେଗୁଡ଼ିକ ନେଇ ଦୂର ସହରରେ ବିକି କୌଣସି ମତେ ଚଳିଯାଏ ।

ଦିନେ ସହରରୁ ଫେରୁ ଫେରୁ ଡେରି ହୋଇଗଲା । ବେଶି ଅନ୍ଧାର ହୋଇଯିବା ଭୟରେ ସେ ତରବର ହୋଇ ଆସୁଥାଏ । ବାଟରେ ହଠାତ୍ ବର୍ଷା ହେଲା । ସେ ଦେଖିଲା ସେଠାରେ ଅନେକ ବଡ ବଡ ତେନ୍ତୁଳି ଗଛ ଅଛି । ତେଣୁ ସେ ଦୌଡ଼ି ଯାଇ ଗୋଟିଏ ବଡ ତେନ୍ତୁଳି ଗଛ ତଳେ ଆଶ୍ରୟ ନେଲା । ହଠାତ୍ ଦେଖିଲା ଏତେ ବର୍ଷା ମଧ୍ୟରେ ଅନ୍ୟ ଗୋଟିଏ ତେନ୍ତୁଳି ଗଛ ତଳେ ନିଆଁ ଜଳୁଛି । ସେ ଚମକି ପଡ଼ି ପାଟି କରି ଦେଲା । ତା' ପାଟି ଶୁଣି କେତେକ ଲୋକ ଯେପରି ହସି ଉଠିଲେ । ସେ ଦେଖିଲା ନିଆଁ ଚାରିପାଖେ ଚାରିଜଣ ପିଶାଚ ବସି ଗପ ଜମେଇଛନ୍ତି । ଶମ୍ଭୁର ଚିତ୍କାର ଶୁଣି ସେମାନେ ତାକୁ ପାଖକୁ ଡାକି କହିଲେ, "ଆସ ଆସ, ନିଆଁ ପାଖରେ ବସ । ଶୀତ କରିବ ନାହିଁ, ତମେ ହରିପୁର ନିବାସୀ ନା ? ଆଚ୍ଛା କହିପାରିବ ତୁମ ଗ୍ରାମରେ କାଲି କ'ଣ କ'ଣ ପ୍ରଧାନ ଘଟଣା ଘଟିବ ?"

ପିଶାଚଙ୍କ ମୁହଁରୁ ସରଳ କଥା ଶୁଣି ଶମ୍ଭୁ ଭୟ ନକରି ପାଖରେ ଯାଇ ବସିଲା ଓ କହିଲା, "ଭାଇ ମୁଁ ତ ଜ୍ୟୋତିଷ ନୁହେଁ କିପରି କହିବି ?"

"ତେବେ ଆମେ ଯାହା କହୁଛୁ ମନ ଦେଇ ଶୁଣ ।" ସେମାନେ କହିଲେ ।

ପ୍ରଥମ ପିଶାଚଟି ଖଣ୍ଡିଏ ନିଆଁ ମୁହଁରେ ପୂରାଇ କହିଲା, "ତୁମ ଗ୍ରାମର ଗୃହଶାଳୀ ପାଖରେ ନିମ୍ବ ଗଛଟିଏ ଡାହାଣପଟକୁ ଢଳି



ରହିଛି । କାଲି ତାହା ଗୃହଶାଳୀ ଘର ଉପରେ ଉପୁଡ଼ି ପଡ଼ିବ ।"

ଦ୍ୱିତୀୟ ପିଶାଚ ଆଞ୍ଜୁଳାଏ ନିଆଁ ନିଜ ମୁଣ୍ଡ ଉପରେ ଢାଳି କହିଲା, "କାଲି ସନ୍ଧ୍ୟାବେଳେ ମନ୍ଦିରରୁ ଦେବତାଙ୍କର ଶୋଭାଯାତ୍ରାରେ ଥିବା ହାତୀ ହଠାତ୍ ପାଗଳ ହୋଇଯିବ ।"

ତୃତୀୟ ପିଶାଚ ନିଜ ମୁହଁକୁ ଅଗ୍ନିକୁଣ୍ଡ ମଧ୍ୟରେ ରଖି କହିଲା, "କାଲି ସଞ୍ଜରେ ତୁମ ଗ୍ରାମର ବଡ଼ ପୁଷ୍କରିଣୀର ବନ୍ଧ ଫାଟିଯିବ ।"

ସେମାନଙ୍କ କଥା ଶୁଣି ଶମ୍ଭୁକୁ ବହୁତ ଆଶ୍ଚର୍ଯ୍ୟ ଲାଗିଲା । ସେ ଚୁପ୍ ହୋଇ ବସିଥାଏ । ପିଶାଚମାନେ ଏସବୁ କଥା କହିସାରି ହସି ହସି କୁଆଡ଼େ ଅଦୃଶ୍ୟ ହୋଇଗଲେ ।

ବର୍ଷା ବନ୍ଦ ହେବା ମାତ୍ରେ ଶମ୍ଭୁ ସେଠାରୁ ଚାଲି ଚାଲି ଆସି ଗ୍ରାମରେ ପହଞ୍ଚିଲା । ତା'ର ପ୍ରଥମ ପିଶାଚ କଥା ମନେ ପଡ଼ିଲା । ସେ ସେଇ ସଞ୍ଜରେ ଯାଇ ପାଠଶାଳାର ପ୍ରଧାନ ଶିକ୍ଷକଙ୍କୁ ସବୁକଥା କହିଲା, ଶିକ୍ଷକ ଭୟରେ ପରଦିନ ବିଦ୍ୟାଳୟ ବନ୍ଦ ହେବାର ଘୋଷଣା କରିଦେଲେ । ପିଲାମାନେ ଫେରିଗଲେ । କିଛି ସମୟ ପରେ ନିମ ଗଛଟି ଉପୁଡ଼ି ପଡି ବିଦ୍ୟାଳୟର ଅର୍ଦ୍ଧେକ ଘର ନଷ୍ଟ କରିଦେଲା ।

ଶମ୍ଭୁ କଥାରେ ସମସ୍ତଙ୍କର ବିଶ୍ୱାସ ଆସିଗଲା । ଗ୍ରାମବାସୀମାନେ ତାକୁ ପଚାରି ପକାଇଲେ ପିଶାଚ ଆଉ କିଛି କହିଛନ୍ତି କି । ଶମ୍ଭୁ ଦ୍ୱିତୀୟ ପିଶାଚର ଭବିଷ୍ୟତବାଣୀ କହିଲା । ଗ୍ରାମବାସୀମାନେ ଭୟରେ ହାତୀକୁ ଗ୍ରାମଠାରୁ ବହୁ ଦୂରରେ ନେଇ ବାନ୍ଧି ଦେଇ ଆସିଲେ । ମନ୍ଦିରରେ ଠାକୁରଙ୍କର ଯାତ୍ରା ବାହାରିବା ବେଳକୁ ହାତୀ ତେଣେ ପାଗଳ ହୋଇ ଶିକୁଳି ଛିଡ଼ାଇ ଜଙ୍ଗଲକୁ ପଳାଇଲା ।

ପୁଣି ଗ୍ରାମବାସୀମାନେ ଶମ୍ଭୁକୁ ପିଶାଚମାନଙ୍କ ବିଷୟରେ ପଚାରିଲେ । ଶମ୍ଭୁ କହିଲା ସଞ୍ଜ ପହରକ ବେଳକୁ ବଡ ପୁଷ୍କରିଣୀର ବନ୍ଧ ଭାଙ୍ଗି ଯିବ । ଗ୍ରାମବାସୀମାନେ ଦେଖିଲେ ତାହା ବିପଜ୍ଜନକ । ତେଣୁ ସେମାନେ କୋଡ଼ି କୋଦାଳ ପଥର ମାଟି ସବୁ ଧରି ପ୍ରସ୍ତୁତ ଥା'ନ୍ତି । ହଠାତ୍ ବର୍ଷା ଘୋଟିଲା । କିଛି ସମୟ ବର୍ଷା ହେବା ପରେ ପୁଷ୍କରିଣୀଟି ପୂରିଗଲା ଓ




ଗୋଟିଏ ପଟରେ ବନ୍ଧ ଫାଟିଗଲା । ଲୋକମାନେ ତତ୍‌କ୍ଷଣାତ୍ ମାଟି ହାଣି ବନ୍ଧ ବାନ୍ଧି ଦେଲେ ।

ବିପଦ ତ କଟିଗଲା । ଗ୍ରାମବାସୀମାନେ ବହୁତ ଖୁସି ହୋଇ ଶମ୍ଭୁକୁ ଖୁବ୍ ପ୍ରଶଂସା କଲେ ଓ ନାନା ପ୍ରକାର ଉପହାରମାନ ଦେଲେ । ଶମ୍ଭୁ ମଧ୍ୟ ଖୁବ୍ ଖୁସି । ପରେ ପୁଣି ଗ୍ରାମବାସୀମାନେ ପଚାରିଲେ, "ଆଚ୍ଛା ଶମ୍ଭୁ, ଇଏ ତ ହେଲା ଦିନକର ଘଟଣା । କାଲି ପୁଣି କ'ଣ ଭଲ ମନ୍ଦ ଥାଇପାରେ ତୁ ଯାଇ ପିଶାଚମାନଙ୍କୁ ପଚାରି କହ !"

ସେଦିନ ସନ୍ଧ୍ୟା ହେବା ମାତ୍ରେ ଶମ୍ଭୁ ଯାଇ ତେନ୍ତୁଳି ବଣରେ ହାଜର । ଏବେ ଶମ୍ଭୁର ଡରଭୟ ତ ତିଳେ ମାତ୍ର ନାହିଁ । ପିଶାଚମାନଙ୍କର ଅପେକ୍ଷାରେ ବସିଥାଏ । ଦୂରରୁ ପିଶାଚମାନେ ତାକୁ ଦେଖି ପଚାରିଲେ "ଆରେ ହରିପୁରବାଲା, କ'ଣ ଆମ କଥା ସତ ହେଲାଟି ?"

"ସମ୍ପୂର୍ଣ୍ଣ ସତ । ତମେ ସବୁ ଯାହା ଯାହା କହିଥିଲ ସବୁ ସତ ହେଲା । ତେଣୁ ଗ୍ରାମବାସୀମାନେ ମୋତେ ତୁମ ନିକଟକୁ ପଠାଇଛନ୍ତି ଓ ପଚାରିଛନ୍ତି ଯଦି କାଲି ପାଇଁ କିଛି କହିବାର ଥାଏ କୁହ ।" ଶମ୍ଭୁ କହିଲା ।

ଗୋଟିଏ ପିଶାଚ ନିଆଁ ଖଣ୍ଡେ ଧରି କହିଲା, "ଜାଣ କାଲି ଜମିଦାର ଘରେ ଡକାୟତି ହେବ ।"

ଆଉ ଜଣେ ପିଶାଚ କହିଲା, "କାଲି ଗ୍ରାମର ମୁଖିଆ ଧନଞ୍ଜୟ ଝିଅର ବାହାଘର । ବରଯାତ୍ରୀଙ୍କ ପାଇଁ ତିଆରି ହୋଇଥିବା ମିଷ୍ଟାନ୍ନରେ ଝିଟିପିଟି ପଡ଼ିଯିବ ।

ତା'ପରେ ପିଶାଚମାନେ ଅଦୃଶ୍ୟ ହୋଇଗଲେ । ଶମ୍ଭୁ ଗ୍ରାମକୁ ଫେରି ଏସବୁ କଥା ଗ୍ରାମର ଜମିଦାର ଓ ଧନଞ୍ଜୟଙ୍କୁ କହିଲା । ସେମାନେ ଯଥେଷ୍ଟ ସାବଧାନତା ଅବଲମ୍ବନ କଲେ । ତେଣୁ କୌଣସି ବିପଦ ବା ଅସୁବିଧା ଜନକ ପରିସ୍ଥିତିର ସମ୍ମୁଖୀନ ହେଲେ ନାହିଁ ।

ଏସବୁ କଥା ପ୍ରଚାର ହୋଇଯିବା ଦ୍ୱାରା ସବୁବେଳେ ଲୋକମାନେ ଶମ୍ଭୁ ଘରକୁ ଦୌଡ଼ିଲେ । ଶମ୍ଭୁର ବି ବହୁତ ରୋଜଗାର ହେଉଥାଏ । ସେ ଆରାମରେ ଥାଏ । ଦିନେ ସକାଳୁ ସକାଳୁ ଜମିଦାର ଆସି ଶମ୍ଭୁ ଦୁଆରେ



ହାଜର । ସେ ଶମ୍ଭୁକୁ କହିଲେ, "ଭାଇ ଶମ୍ଭୁ ତୁ ଆଜି ଟିକଏ ପିଶାଚମାନଙ୍କୁ ପଚାରିବୁ ଯେ ମୋର ପୁଅ କେବେ ହେବ । ମୁଁ ତୋତେ ସେଥିପାଇଁ ଯଥେଷ୍ଟ ପାରିଶ୍ରମିକ ଦେବି । ଏବେ ଏତକ ଅଗ୍ରିମ ଭାବରେ ଦେଉଛି ।" ଏକଥା କହି ସେ ଶମ୍ଭୁକୁ ଶହେଟି ସ୍ୱର୍ଣ୍ଣମୁଦ୍ରା ଦେଲେ ।

ତା'ପରେ ଅମ୍ବାପୁର ଗ୍ରାମର ଜମିଦାର ଆସି ଶମ୍ଭୁ ପାଖରେ ହାଜର । ସେ ବ୍ୟସ୍ତ ହୋଇ ଶମ୍ଭୁକୁ କହିଲେ, "ବାବା ଶମ୍ଭୁ, ମୋ ପାଇଁ ଟିକଏ ପିଶାଚଙ୍କୁ କିଛି ପ୍ରଶ୍ନ ପଚାରିବୁ ?"

"ପ୍ରଥମେ କୁହନ୍ତୁ କି ପ୍ରଶ୍ନ ?" ଶମ୍ଭୁ କହିଲା ।

"ଦେଖ, ମୋର ଓ ମୋ ପତ୍ନୀଙ୍କର ପୂର୍ବପୁରୁଷମାନେ ବାଣିଜ୍ୟ କରି କୋଟିପତି ହୋଇଥିଲେ । ମୁଁ ତ ଏବେ ଏଇଠାରେ ଯାହା ବ୍ୟବସାୟ କରି ଚଳୁଛି । କିନ୍ତୁ ମୋର ପତ୍ନୀ ସର୍ବଦା ମୋତେ କହୁଛି ବାଣିଜ୍ୟ କରିବାକୁ । ସେଥିରେ ମୁଁ ଲାଭବାନ୍ ହେବି କି ନାହିଁ ପଚାରିବୁ । ଯଦି ନ ହେବି ତେବେ ଏଇ ବ୍ୟବସାୟ ନେଇ ବରଂ ମୁଁ ସାରା ଜୀବନ କଟାଇବି ବାଣିଜ୍ୟ ଆରମ୍ଭ ମଧ୍ୟ କରିବି ନାହିଁ ।" ଜମିଦାର କହିଲେ ।

ତା'ପରେ ନିଜ ଗ୍ରାମର ଓ ଆଖପାଖ ଗ୍ରାମମାନଙ୍କରୁ ଲୋକ ସବୁ ଅନେକ ସମସ୍ୟା ନେଇ ଶମ୍ଭୁ ପାଖକୁ ଦୌଡ଼ିଲେ । ସନ୍ଧ୍ୟା ସମୟକୁ ତା' ପାଖରେ ଏକହଜାର ମୁଦ୍ରା ଏକତ୍ରିତ ହୋଇଥିଲା । ରାତି ହେବା ମାତ୍ରେ ଶମ୍ଭୁ ଜଙ୍ଗଲ ବଣକୁ ଦୌଡ଼ିଲା । ଗୋଟିଏ କାଗଜରେ ପ୍ରଶ୍ନ ସବୁକୁ ଲେଖିଥାଏ । ପିଶାଚମାନେ ତାକୁ ଦୂରରୁ ଦେଖି ହସି ହସି କହିଲେ, "ଆରେ ହରିପୁରିଆ ଆସ, ଆସ ।"

ଶମ୍ଭୁ ଆନନ୍ଦରେ ଓ ନିର୍ଭୟରେ ପିଶାଚମାନଙ୍କ ପାଖକୁ ଯାଇ କହିଲା, "ଦେଖ ଏକ ନୂତନ କଥା ଶୁଣାଇବି । ମୋ ଘରକୁ ବହୁତ ଧନୀ, ଜମିଦାର ଓ ସାଧାରଣ ଲୋକ ତୁମଠାରୁ ଉତ୍ତର ପାଇବା ପାଇଁ ଦୌଡୁଛନ୍ତି । ଏଇ କାଗଜରେ ଲେଖାଥିବା ପ୍ରଶ୍ନ ଗୁଡିକ ମୁଁ ପଚାରିବି ତମେମାନେ ଉତ୍ତର କହିବ । ଆଉ ହଁ, ଶୁଣ ସେଥିପାଇଁ ତମେ କିଛିହେଁ ପାରିଶ୍ରମିକ ନେବ । ଏପରି ହେଲେ ତୁମ ଉତ୍ତର ଯୋଗୁ ମୋର ଓ

ତୁମର ରୋଜଗାର ଭଲ ହେବ । ମୁଁ ଆଉ ବଗିଚା କାମ ନ କରି ଆରାମରେ ବସି ଖାଇବି । ନିଅ ଏ ଟଙ୍କା ।" ଏହା କହି କିଛି ମୁଦ୍ରା ଥିବା ଏକ ଛୋଟ ଥଳି ଶମ୍ଭୁ ସେମାନଙ୍କ ଆଗରେ ରଖିଲା ।

ଏସବୁ ଶୁଣି ପିଶାଚମାନେ ରାଗରେ ଲାଲ୍ ହୋଇଗଲେ । କାଗଜକୁ ଓ ମୁଦ୍ରା ସବୁ ନିଆଁ ରେ ପକାଇ ଦେଇ ଜଣେ କହିଲା, "ମୂର୍ଖ, ତୁ ଏଠାକୁ ଆଉ କେବେ ମଧ୍ୟ ଆସିବୁ ନାହିଁ । ଆସିଲେ ମଧ୍ୟ ଆମକୁ ଆଉ ଦେଖି ପାରିବୁ ନାହିଁ ।" ଏତକ କହି ସେମାନେ ଅଦୃଶ୍ୟ ହୋଇଗଲେ ।

ଶମ୍ଭୁ ତ ସେଇଠି ଥକ୍କା ହୋଇ ବସିଛି । ମନ ଦୁଃଖରେ ଭାବୁଛି କ'ଣ କରିବ । ସେମାନଙ୍କ ଟଙ୍କା କିପରି ଫେରାଇବ । ସକାଳ ହେବାରୁ ଜଣେ ବୟସ୍କ ତୀର୍ଥଯାତ୍ରୀ ସେବାଟେ ଯାଉଥିଲେ । ଶମ୍ଭୁର ଏ ଅବସ୍ଥା ଦେଖି ପଚାରିଲେ, "ପୁଅ ତୁ କ'ଣ ପାଇଁ ଏତେ ଚିନ୍ତାମଗ୍ନ ଓ ଦୁଃଖିତ ?"

ଶମ୍ଭୁ ତାଙ୍କୁ ସବୁ କଥା ଆମୂଳଚୂଳ କହିଲା, ତୀର୍ଥଯାତ୍ରୀ ସବୁ ଶୁଣି କହିଲେ, "ପୁଅ, ତୁ କ'ଣ ଏତିକି ଜାଣି ନଥିଲୁ ଯେ ପିଶାଚମାନେ ଧନ ନେଇ କ'ଣ କରିବେ ? ସେମାନେ ମନୁଷ୍ୟ ଜନ୍ମ ନେଇ କିଛି ଖରାପ କାମ କରି ପିଶାଚ ହୋଇ ଏପରି କର୍ମଫଳ ଭୋଗୁଛନ୍ତି । ତେଣୁ ଚାହୁଁଥିଲେ କିଛି ସତ୍‌କାର୍ଯ୍ୟ କରିବାକୁ । ତେବେ ତାଙ୍କର ପାପ କିଛି କମ୍ ହେବ । ତାଙ୍କର ପ୍ରାୟଶ୍ଚିତ କରିବାର କାର୍ଯ୍ୟ ତୋ ପାଇଁ ବ୍ୟବସାୟର ରୂପ ନେଲା । ତେଣୁ ସେମାନେ ଫେରି ଚାଲିଗଲେ । ପିଶାଚଙ୍କ ପଇସାରେ କାହାର କିଛି ହୁଏ ?"

ତୀର୍ଥଯାତ୍ରୀଙ୍କ ଉପଦେଶରେ ଶମ୍ଭୁର ଜ୍ଞାନ ହେଲା । ସେ ଘରେ ଥିବା ମୁଦ୍ରା ଅନ୍ୟମାନଙ୍କୁ ଫେରାଇ ଦେଇ ନିଜେ ପରିଶ୍ରମ କରି ଧନ ଉପାର୍ଜନ କରି ଭଲରେ ରହିଲା । ଏସବୁ ଘଟଣା ତା'ର ସ୍ମୃତି ପଟରେ ଏକ ଦୁଃସ୍ୱପ୍ନ ପରି ମନେ ହେଲା ।





# ମନୋନୟନ

ରାଜପୁର ରାଜ୍ୟର ସେନାପତି ବୀରମଲ୍ଲ ହଠାତ୍ ମରିଗଲେ । ସେ ଥିଲେ ବୀର, କୁଶଳୀ, ବୁଦ୍ଧିମାନ ଓ ରାଜଭକ୍ତ । ତାଙ୍କ ମୃତ୍ୟୁ ରାଜା ଇନ୍ଦ୍ରସେନଙ୍କ ପାଇଁ ଥିଲା ଏକ ମାନସିକ ଧକ୍କା । ତାଙ୍କ ମନ ଭାଙ୍ଗି ପଡ଼ିଲା । ଏବେ ନୂତନ ସେନାପତି ବାଛିବାକୁ ହେବ । ସୈନ୍ୟ ବିଭାଗରୁ ମନେ ମନେ ସେ ତିନିଜଣ ବ୍ୟକ୍ତିଙ୍କ ଉପରେ ଦୃଷ୍ଟି ରଖିଥା'ନ୍ତି । ତାଙ୍କର ମଧ୍ୟରୁ ଜଣଙ୍କୁ ସେନାପତି ପଦ ଦେବା ପାଇଁ ତାଙ୍କର ଇଚ୍ଛା । କିନ୍ତୁ କିଏ ଯୋଗ୍ୟତମ ପ୍ରାର୍ଥୀ ସେକଥା ନିର୍ଣ୍ଣୟ କରିବ କିଏ ?

ଏହି ସମୟରେ ଦିନେ ଇନ୍ଦ୍ରପୁରର ସେନାପତି ଅଜିତ୍ ସିଂହ ଇନ୍ଦ୍ରସେନଙ୍କ ସହିତ ଦେଖା କରିବାକୁ ଆସିଲେ । ଦୁଇରାଜ୍ୟ ମଧ୍ୟରେ ପ୍ରଗାଢ଼ ମିତ୍ରତା ଅଛି । ଇନ୍ଦ୍ରପୁରର ରାଜା ଭରତ ସିଂହ ଖବର ପାଇଲେ ପଡ଼ୋଶୀ ରାଜ୍ୟ ବିରମପୁରର ରାଜା ତାଙ୍କ ରାଜ୍ୟ ଆକ୍ରମଣ କରିବାକୁ ପ୍ରସ୍ତୁତ ହେଉଛନ୍ତି । ତେଣୁ ଏ ବିଷୟରେ କି ପଦକ୍ଷେପ ନିଆଯିବ ଏହି କଥା ସେ ପରାମର୍ଶ ପଠାଇଥିଲେ ଇନ୍ଦ୍ରସେନଙ୍କ ପାଖକୁ । ଖବର ନେଇ ଆସିଥିଲେ ସେଠାକାର ସେନାପତି ଅଜିତ୍ ସିଂ ।

ଅଜିତ୍ ସିଂ ଇନ୍ଦ୍ରସେନଙ୍କୁ କହିଲେ, "ମହାରାଜ, ଆମ ଦୁଇରାଜ୍ୟର ମିତ୍ରତା ବହୁଦିନର । ଏବେ ପଡ଼ୋଶୀ ରାଜ୍ୟ ଆମ ରାଜ୍ୟ ଉପରେ ଆକ୍ରମଣ କରିବାକୁ ପ୍ରସ୍ତୁତ । ଆପଣ ବୟୋଜ୍ୟେଷ୍ଠ । ପୁଣି ଆପଣଙ୍କୁ କିଛି ନ ଜଣାଇ ବା ଆପଣଙ୍କର ଉପଦେଶ ନ ନେଇ ଆମ ରାଜା ପଦଟିଏ ସୁଦ୍ଧା ଅଗ୍ରସର ହେବେ ନାହିଁ । ସେ କଥା ଆପଣ ଜାଣନ୍ତି । ଏବେ ଏଇ ଉପସ୍ଥିତ ବିପଦବେଳେ ଆପଣଙ୍କ

ସୁରେନ୍ଦ୍ର

ମତାମତ ନେବାପାଇଁ ଆମ ରାଜା ମୋତେ ଆପଣଙ୍କ ନିକଟକୁ ପଠାଇଛନ୍ତି ।" ଇନ୍ଦ୍ରସେନ କହିଲେ, "ସେନାପତି, ତୁମେ ଜାଣ ଯେ ଆମ ରାଜ୍ୟର ସେନାପତିଙ୍କର ଅକାଳ ବିୟୋଗରେ ମୁଁ ଭାଙ୍ଗି ପଡ଼ିଛି । ସେ ଥିଲେ ମୋର ଆଉ ଭୟ କ'ଣ ଥା'ନ୍ତା । ଏବେ ନୂଆ ସେନାପତି ମଧ୍ୟ ମୁଁ ତାହାକୁ ବାଛି ପାରୁନାହିଁ । କପରି ତାହାକୁ ଜାଣିବ କିଏ ଭଲ ଲୋକ । ତଥାପି ମୋର ସୈନ୍ୟବାହିନୀ ମଧ୍ୟରୁ ମୁଁ ମନେ ମନେ ତିନିଜଣଙ୍କୁ ପସନ୍ଦ କରିଛି । ତାଙ୍କର ମଧ୍ୟରୁ ଜଣକୁ ବାଛିବ । ତମେ ଏ ବିଷୟରେ ମୋତେ ଯଦି ସାହାଯ୍ୟ କରନ୍ତ ତେବେ ବଡ଼ ଭଲ ହୁଅନ୍ତା ।"

ଅଜିତ୍ ସିଂହ କହିଲେ, "ନିଶ୍ଚୟ, ନିଶ୍ଚୟ, ଏଥିରେ ଭାବିବାର କ'ଣ ଅଛି । ଚଲନ୍ତୁ ଆଜି ସେମାନଙ୍କୁ ଅଲଗା ଅଲଗା ଡାକି କଥାବାର୍ତ୍ତା କରିବା ଓ ସେନାପତି ମନୋନୟନ ପାଇଁ ଚେଷ୍ଟା କରିବା ।"

ସନ୍ଧ୍ୟାବେଳକୁ ରାଜା ଓ ସେନାପତି ପ୍ରଥମେ ସୁରସେନ ନାମକ ବ୍ୟକ୍ତିକୁ ଡକାଇଲେ । ଅଜିତ୍ ସିଂହ ତାଙ୍କୁ ପଚାରିଲେ, "ଗୁପ୍ତଚରଠାରୁ ଖବର ମିଳିଛି ପଡ଼ୋଶୀ ରାଜ୍ୟ ଏହି ରାଜ୍ୟ ଆକ୍ରମଣ କରିବ । ତମେ କହିପାରିବ କି ତାଙ୍କର ସୈନ୍ୟସଂଖ୍ୟା ଓ ଏଠାକାର ସୈନ୍ୟସଂଖ୍ୟା କେତେ ?"

ସୁରସେନ ତତ୍‌କ୍ଷଣାତ୍ ସମସ୍ତ ଖବରର ଠିକନିଖ ବିବରଣୀ ଦେଲେ ।



ତା'ପରେ ଅଜୟଙ୍କର ପାଳି ପଡ଼ିଲା । ସେ ମଧ୍ୟ ସୁରସେନଙ୍କ ପରି ସବୁକିଛି ବିବରଣୀ ଠିକନାଖ ଦେଇ ପାରିଲେ । ତା'ପରେ ପାଳି ପଡ଼ିଲା ବିକ୍ରମଙ୍କର । ତାଙ୍କୁ ମଧ୍ୟ ସେହି ଏକହିଁ ପ୍ରଶ୍ନ ପଚରାଗଲା । ଅନ୍ୟ ରାଜ୍ୟର ସୈନ୍ୟବଳ ବିଷୟରେ ସେ ସମସ୍ତ ବିବରଣୀ ସହଜରେ ଦେଇ ଦେଲେ । କିନ୍ତୁ ନିଜ ରାଜ୍ୟର ସୈନ୍ୟବଳ ବିଷୟରେ ସେ ଅଳ୍ପ କିଛି କହିଲେ, ତାହା ମଧ୍ୟ ଭଲ ଭାବରେ ନୁହେଁ ।

ସେ ଯିବା ପରେ ଅଜିତ୍ ସିଂହ କହିଲେ, "ମହାରାଜ, ବିକ୍ରମହିଁ ଆପଣଙ୍କ ସେନାପତି ପଦ ପାଇଁ ଯୋଗ୍ୟତମ ବ୍ୟକ୍ତି ।"

ଅଜିତ୍ ସିଂହଙ୍କ ମତାମତରେ ଇନ୍ଦ୍ରସେନ ଖୁବ୍ ଆଶ୍ଚର୍ଯ୍ୟ ହୋଇ କହିଲେ, "ଯିଏ ନିଜ ରାଜ୍ୟର ସୈନ୍ୟବଳ ବିଷୟରେ ଖବର ରଖିନାହିଁ ସେ କିପରି ତନପ୍ରାର୍ଥୀ ମାନଙ୍କ ଭିତରୁ ଯୋଗ୍ୟତମ ?"

"ମହାରାଜ, ସେ ସବୁ ଜାଣେ । ମୁଁ ଜଣେ ବାହାରର ଲୋକ ଅଛି ବୋଲି ସେ ସବୁ କିଛି ଗୁପ୍ତ ରଖିଲା । ସେ ଏପରି କାହିଁକି କଲା ପରେ ତାକୁ ଆପଣ ପଚାରି ବୁଝିବେ ।" ଅଜିତ୍ ସିଂହ କହିଲେ ।

ଅଜିତ୍ ସିଂହ ଇନ୍ଦ୍ରପୁର ଲେଉଟି ଯିବା ପରେ ଇନ୍ଦ୍ରସେନ ବିକ୍ରମଙ୍କୁ ଡାକି ପଚାରିଲେ, "କ'ଣ ଆମ ରାଜ୍ୟର ସୈନ୍ୟବଳ କେତେ ସେ ଖବର ତମେ କିଛି ଜାଣିନାହିଁ ?"

ବିକ୍ରମ ବିନୟ ସହକାରେ କହିଲେ, "ମହାରାଜ, ଆମ ରାଜ୍ୟ ଓ ଇନ୍ଦ୍ରପୁର ମଧ୍ୟରେ ଏବେ ମିତ୍ରତା ଅଛି । କିନ୍ତୁ ଯଦି ଭବିଷ୍ୟତରେ ଏ ସମ୍ପର୍କ ନ ରହେ । ତେବେ ମୋର ମତ ହେଉଛି ଜଣେ ଅନ୍ୟ ରାଜ୍ୟର ସେନାପତିକୁ ଆମର ଗୁପ୍ତକଥା କହିବା ଉଚିତ୍ ନୁହେଁ ।"

ବିକ୍ରମଙ୍କର ସମୁଚିତ ଉତ୍ତର ଶୁଣି ରାଜା ଖୁସି ହୋଇଗଲେ ଓ ତାଙ୍କୁହିଁ ପ୍ରଧାନ ସେନାପତି ପଦ ପ୍ରଦାନ କଲେ ।





# ବୁଦ୍ଧିମାନ ପୁତ୍ର

ଚନ୍ଦ୍ରପୁର ଗ୍ରାମରେ ମୋହନ ଦାସ ନାମରେ ଗୃଷୀଟିଏ ଥାଏ । ତା'ର କଣନ୍ ନାମରେ ପୁଅଟିଏ ଥାଏ । ପିଲାଦିନୁ ମା' ମରିଥାଏ ବୋଲି ମୋହନ ପୁଅକୁ ବଡ଼ ଆଦର ଯତ୍ନରେ ଲାଳନ ପାଳନ କରୁଥାଏ । କ୍ରମେ ପୁଅ ବଡ଼ ହେଲା । ମୋହନର ପୂର୍ଣ ବିଶ୍ୱାସ ଦିନେ ନା ଦିନେ ତା' ପୁଅ ଜଣେ ବଡ଼ ମଣିଷ ହେବ । ବୁଦ୍ଧିରେ ସେ ହେବ ଅଦ୍ୱିତୀୟ ।

ଏମିତି ଅନେକ ଦିନ ବିତିଗଲା । ପୁଅ ଆଜି କୋଡିଏ ବରଷର ହେଲା, କିନ୍ତୁ ଦିନେ ହେଲେ ପୁଅର ବୁଦ୍ଧିର ପରିପ୍ରକାଶ ଘଟିଲା ନାହିଁ । ମୋହନ ଖୁବ୍ ନିରାଶ ହୋଇ ଦିନେ ପୁଅକୁ ପାଖକୁ ଡାକି କହିଲା, "କଣନ୍, ମୁଁ ବହୁତ ଆଶା ପୋଷଣ କରିଥିଲି ତୋ ପାଇଁ । କିନ୍ତୁ ଦେଖୁଛି ତୁ ଆଦର ପାଇ ନଷ୍ଟ ହୋଇଛୁ ଆଉ ତୋର ବୁଦ୍ଧି ଦିନକୁ ଦିନ ମନ୍ଦ ହୋଇ ଯାଉଛି ।"

"ବାପା, କ'ଣ କହୁଛନ୍ତି ? ମୋ ବୁଦ୍ଧି ମନ୍ଦ ହେଲେ ଏ ଗାଁରେ ତେବେ ବୁଦ୍ଧିମାନ କିଏ ? ଆପଣ କୁହନ୍ତୁ କପରି ଭାବରେ ମୁଁ ମୋ ବୁଦ୍ଧିମତ୍ତାର ପ୍ରମାଣ କରିବି ?" କଣନ୍ କହିଲା ।

"କଣନ୍, ଆମ ଘରେ ଗୋଟିଏ ମେଣ୍ଢା ଚମଡ଼ା ଅଛି । ତାକୁ ନେଇ ତୁ ହାଟରେ ବିକି ଆସିବୁ ।" ମୋହନ କହିଲା ।

"ଠିକ୍ ଅଛି । ଏଇ କଥା ତ ? ଆଜି ଯାଇ ମୁଁ ଚମଡ଼ାଟିକୁ ହାଟରେ ବିକି ପଇସା ଆଣିବି ।" କଣନ୍ କହିଲା ।

"ଆରେ କଣନ୍, ଚମଡ଼ା ବିକି ପଇସା ତ ଯେ କୌଣସି ଲୋକ ଆଣିପାରିବ । ସେଥିରେ ବୁଦ୍ଧିର ବାହାଦୁରି କାହିଁ ? ତୁ ଯଦି ପ୍ରକୃତରେ

ପଚିଶବର୍ଷ ତଳର 'ଚନ୍ଦାମାମ'ରୁ ଗୃହୀତ



ବୁଦ୍ଧିମାନ ତେବେ ଚମଡ଼ା ଓ ପଇସା ଦୁଇଟି ଘରକୁ ନେଇ ଆସିବୁ ।" ମୋହନ କହିଲା ।

କଶନ୍ କିଛି ନ ବୁଝି ସଙ୍ଗେ ସଙ୍ଗେ ଉତ୍ତର ଦେଲା, "ଠିକ୍ ଅଛି । ମୁଁ ତାହାହିଁ କରିବି । ଆପଣ ଦେଖିବେ କାଲି ସନ୍ଧ୍ୟା ପୂର୍ବରୁ ମୁଁ ଚମଡ଼ା ଓ ତା'ର ମୂଲ୍ୟ ଦୁଇଟି ଆଣି ଆପଣଙ୍କୁ ଦେଇଦେବି ।"

ପରଦିନ ସକାଳୁ କଶନ୍ ଚମଡ଼ାଟି ନେଇ ହାଟକୁ ଗଲା । ଜଣେ ବ୍ୟକ୍ତି ଆସି ତାହାର ମୂଲ୍ୟ ପଚାରନ୍ତେ କଶନ୍ କହିଲା, "ଭାଇ ଦେଖ, ଏହି ଚମଡ଼ା ବିକିବାରେ ଗୋଟିଏ ସର୍ତ୍ତ ଅଛି । ମୁଁ ବିକିବା ପରେ ମଧ୍ୟ ଚମଡ଼ାକୁ ଫେରାଇ ନେବି ।"

ତା'ର ଅଦ୍ଭୁତ ସର୍ତ୍ତ ଶୁଣି ଗ୍ରାହକ ହସି ପକେଇ କହିଲା, "ବାଃ, ତୁମର ସର୍ତ୍ତ ତ ବହୁତ ଭଲ । ତେବେ ଦେଖ କେହି ମୂର୍ଖ ଗ୍ରାହକ ଯଦି ମିଳିଯାଏ, ଯିଏ ଚମଡ଼ା ନ ନେଇ ତା'ର ମୂଲ୍ୟ ଦେଇଦେବ ।"

ହାଟରେ ଅନେକ ଲୋକ କଶନ୍‌କୁ ଚମଡ଼ାର ମୂଲ୍ୟ ପଚାରନ୍ତେ ସେ ସେହି ଏକାହିଁ ସର୍ତ୍ତ କଥା କହିଲା । ସମସ୍ତେ ଏହି ଅଦ୍ଭୁତ କଥା ଶୁଣି ହସି ହସି ଚାଲିଗଲେ ।

ହାଟ ସାରା ବୁଲି ବୁଲି ପାଦ ଥକିଗଲା । ଏହି ସମୟରେ ତା'ର ଦୃଷ୍ଟି ପଡ଼ିଲା ଦଳେ ଲୋକଙ୍କ ଉପରେ । ସେମାନେ ଗୋଟିଏ ସ୍ଥାନରେ ଖୁବ୍ ଭିଡ଼ କରିଛନ୍ତି । କଶନ୍ ଯାଇ ଦେଖିଲା ଜଣେ ଯାଦୁକର ଖେଳ ଦେଖାଉଛି । କଶନ୍ ଯାଦୁ ଦେଖିବାକୁ ଯାଇ ଠିଆ ହେବା ମାତ୍ରେ ଯାଦୁକର କହିଲା, "ଆରେ ଭାଇ ଏଇ ମେଣ୍ଢା ଚମଡ଼ା ଟିକିଏ ଦିଅ ତ ମୁଁ ଏକ ବଢ଼ିଆ ଯାଦୁ ଦେଖାଇବି ।"

କଶନ୍ ଚମଡ଼ାଟି ତାକୁ ଦେଇଦେଲା । ସେ ଚମଡ଼ାଟିକୁ ତଳେ ଥୋଇ ତା' ଉପରେ ଗୋଟିଏ ଗାମୁଛା ଢାଙ୍କିଦେଇ କହିଲା, "ଭାଇମାନେ ହାତତାଳି ଦିଅନ୍ତୁ ।" ଖୁବ୍ ତାଳି ବାଜିଲା । ତା'ପରେ ଯାଦୁକର ଗାମୁଛା ଉଠାଇ ଦେବା ମାତ୍ରେ ଦେଖାଗଲା ସେଠାରେ ଚମଡ଼ା ବଦଳରେ ଅଛି ଛୋଟିଆ ଆମ୍ବ ଗଛଟିଏ ଓ ସେଥିରେ ପୁଣି ଝୁଲୁଛି ଆମ୍ବଟିଏ । ଏ

ଦୃଶ୍ୟ ଦେଖି କଣନ୍ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲା । ଏ ଘଟଣା କିପରି ସମ୍ଭବ ହେଲା ସେ ଭାବୁଥାଏ । ତା'ପରେ ସେ ଯେତେବେଳେ ନିଜ ମେଣ୍ଢା ଚମଡ଼ା ବିଷୟରେ ସଚେତନ ହେଲା ଯାଦୁକରକୁ ଖୋଜିଲା, ସେତେବେଳକୁ ସେ ସେଠାରୁ ଚାଲି ଯାଇଥାଏ ।

କଣନ୍ ବହୁତ ଦୁଃଖିତ ଓ ନିରାଶ ହୋଇ ପଡ଼ିଲା । ଚମଡ଼ା ଓ ଦାମ୍ ଦୁଇଟା ବାପାକୁ ଦେବାର ପ୍ରତିଶ୍ରୁତି ତ କୁଆଡ଼େ ଗଲା; ଏବେ ନିଜର ମୂର୍ଖାମି ଯୋଗୁ ଚମଡ଼ାଟି ମଧ୍ୟ ହରାଇଲା । ଏଣେ ସାରାଦିନ ବୁଲି ବୁଲି ଭୋକରେ ପେଟ ଜଳୁଛି । ଚମଡ଼ା କଥା ନ ଭାବି ଭାବିଲା, "ଆମ୍ବଟି ଆଗ ଖାଏ ପରେ ଦେଖାଯିବ ।" ସେ ଯେମିତି ଆମ୍ବକୁ ଛୁଇଁଛି ଆମ୍ବଗଛ କୁଆଡ଼େ ଉଭାନ ହୋଇଗଲା ସେଠାରେ ସେ ଦେଖିଲା ତା' ମେଣ୍ଢା ଚମଡ଼ାଟି ରହିଛି ।

ଆଉ କିଛି ନଭାବି ଚମଡ଼ାଟିକୁ ଧରି ସେ ଗ୍ରାମକୁ ଫେରିଲା । ସନ୍ଧ୍ୟା ହେବାକୁ ଆଉ ଅଳ୍ପ ସମୟ ବାକି ଅଛି । ରାସ୍ତା ଶୁନ୍‌ଶାନ୍ । କଣାନ୍ ଧୀରେ ଧୀରେ ଚାଲି ଚାଲି ଯାଉଥାଏ, ଲାଗିଲା ପଛରୁ କିଏ ତାକୁ ଚିତ୍କାର କରି ଡ଼ାକୁଛି । ପଛକୁ ଚାହିଁ ଦେଖିଲା ଯାଦୁକର । ଯାଦୁକର ଆସି ତା' ସହିତ ଚାଲି ଚାଲି କହିଲା, "ଦେଖ ମୁଁ ତୁମକୁ ଗୋଟିଏ କଥା କହିବି ତୁମର ଭଲ ପାଇଁ, କିନ୍ତୁ କେବେ ମଧ୍ୟ ସେକଥା ଭୁଲିବ ନାହିଁ ।"




"କି କଥା ତୁମେ ମୋତେ କହିବ ?" କଣନ୍ ପଚାରିଲା ।

"ବାଟରେ ଯିବାବେଳେ ତୁମେ ଯଦି କୌଣସି ସ୍ତ୍ରୀ ଲୋକକୁ ଭେଟିବ ତେବେ ତାକୁ କୁଶଳ ପ୍ରଶ୍ନ ପଚାରିବ ।" ଯାଦୁକର କହିଲା । ତା'ପରେ କିଛିଦୂର ଯାଇ ଯାଦୁକର ଅନ୍ୟ ଏକ ରାସ୍ତାରେ ଚାଲିଗଲା ।

କଣନ୍ ନିଜ ଗ୍ରାମ ଦିଗରେ ଯାଉଥାଏ । କିଛିଦୂର ଯିବା ପରେ ସେ ଦେଖିଲା ଗୋଟିଏ ଘର ପାଖରେ ଜଣେ ପନ୍ଦର ଷୋଳବର୍ଷର ଝିଅଟିଏ ଠିଆ ହୋଇଛି । ସେ ପାଖକୁ ଯାଇ ଝିଅଟିକୁ କହିଲା, "ତମ ଘରେ ସବୁ କୁଶଳ ତ ?"

"ହଁ ସବୁ କୁଶଳ ।" ଝିଅଟି କହିଲା ।

କ୍ରମେ ଅନ୍ୟାନ୍ୟ ବିଷୟରେ ମଧ୍ୟ ଦୁହେଁ କଥା ହେଲେ । କଣନ୍ କଥାବାର୍ତ୍ତାରୁ ବୁଝିଲା ଝିଅଟିର ନାମ ରାଧା । ରାଧା ଯେମିତି ଜାଣିଛି କଣନ୍ ସକାଳୁ କିଛି ଖାଇନାହିଁ ସେ ତାକୁ ଘରକୁ ଡ଼ାକି କିଛି ଖାଇବାକୁ ଦେଲା । ତା'ପରେ ସେ ଚମଡ଼ା ବିଷୟରେ ରାଧା ପଚାରିବାରୁ କଣନ୍ କହିଲା, "ମୋର ବାପା କହିଥିଲେ ବୁଦ୍ଧି ଥିଲେ ଚମଡ଼ା ଓ ମୂଲ୍ୟ ଦୁଇଟି ଫେରାଇ ଆଣିବୁ । ଏଇ ସର୍ତ୍ତରେ କେହି କିଣିଲେ ନାହିଁ ।"

"ଆଚ୍ଛା, ମୁଁ ଦେଉଛି ।" କହି ରାଧା ଚମଡ଼ାଟି ତା' ହାତରୁ ନେଇଗଲା ଓ ତା' ଉପରୁ କିଛି ଲୋମ କାଟି ରଖିଲା ଓ ପୁଣି ଚମଡ଼ାଟି ଫେରାଇ ଦେଲା । ଲୋମର ମୂଲ୍ୟ ମଧ୍ୟ ଦେଇଦେଲା ।

କଣନ୍ ବହୁତ ଖୁସି ହୋଇ ଘରକୁ ଫେରିଲା । ପୁଅ ନିଜର ସର୍ତ୍ତ ରଖିବାରେ କୃତକାର୍ଯ୍ୟ ହୋଇଛି ଦେଖି ବାପା ବହୁତ ଖୁସି ହୋଇଗଲା । ତା'ପରେ ପଚାରିଲା, "ପୁଅ ଏହା କିପରି ସମ୍ଭବ ହେଲା ?"

କଣନ୍ ବାପା ଆଗରେ ସମସ୍ତ ଘଟଣା ବର୍ଣ୍ଣନା କଲା ।

"ଆରେ ପୁଅ ଇଏ ତ ତୋର ବୁଦ୍ଧି ନୁହେଁ । ତେବେ ସେ ଝିଅ ଯଦି ମଙ୍ଗେ ତେବେ ତୁ ତାକୁ ବିବାହ କର । ସେମିତି ବୁଦ୍ଧିମାନ ଝିଅଟିଏ ତୋର ଦାୟିତ୍ୱ ନେଲେ ମୁଁ ଅନ୍ତତଃ ନିଶ୍ଚିନ୍ତ ହେବି ।" ମୋହନ ଦାସ କହିଲା ।

ସେଇଠାରୁ ଉଠି କଣନ୍ ରାଧା ପାଖକୁ ଯାଇ ତା' ବାପାର ଇଚ୍ଛା କଥା ଜଣାଇଲା । କଣନ୍‌ର ସରଳ ଭାବ ରାଧାକୁ ପ୍ରଭାବିତ କରିଥିଲା । ସେ ତା' କଥାରେ ସ୍ୱୀକୃତ ଦେବା ସଙ୍ଗେ ସଙ୍ଗେ କଣନ୍ ସହିତ ତାଙ୍କ ଘରକୁ ଆସିଲା ।

ଶୁଭ ଦିନରେ ଦୁହିଁଙ୍କର ବିବାହ ବଡ଼ ଆଡ଼ମ୍ବର ସହକାରେ ମୋହନ କରାଇଲା ।



# ପଶୁପକ୍ଷୀ

ଆମେରିକାରେ ଏକ ନୌକା ସନ୍ଧାନ ସନ୍ ୧୯୭୬ ମସିହାରେ ଗୋଟିଏ ନୂତନ ଧରଣର ମାଛ ଦେଖିଥିଲେ । ସେ ମାଛର ମୁଖ ମଧ୍ୟରେ କ୍ଷୁଦ୍ର ସରୁ ସାତଧାଡ଼ିର ଦାନ୍ତ ସବୁ ଅଛି । ଏହାର ଲମ୍ବା ୪.୪୬ ମିଟର ଓ ଏହାର ଓଜନ ୭୫୦ କିଲୋଗ୍ରାମ୍ । ଏହାକୁ ମେଗାମାଉଥ୍ ସାର୍କ ବୋଲି କୁହାଯାଏ ।



## ମେଗାମାଉଥ୍ ସାର୍କ



## ପେଚାର କାନ

ଗୋଟିଏ ଜାତିର ପେଚା ଅଛନ୍ତି ସେମାନଙ୍କ ମୁଣ୍ଡ ଉପରେ ଥାଏ ସେମାନଙ୍କ ଲମ୍ବା କାନ । ପ୍ରକୃତରେ ଏହା କାନ ପରି ମନେହେଲେ ମଧ୍ୟ, ତାହା ପେଚାର ଦୁଇଟି ଛୋଟ ପକ୍ଷ । ତା'ର କାନ ଦୁଇଟି ତା'ର ପକ୍ଷ ଭିତରେ ଲୁଚିକରି ଥାଏ ।

ସାରା ବିଶ୍ୱରେ ଥିବା ବାଦୁଡ଼ିମାନଙ୍କ ମଧ୍ୟରୁ ସବୁଠାରୁ ଛୋଟ ବାଦୁଡ଼ି ଥା'ନ୍ତି ଥାଇଲାଣ୍ଡରେ । ସେମାନଙ୍କ ପକ୍ଷ ୧୦୦ ମିଲିମିଟର ଲମ୍ବ ଓ ସେମାନଙ୍କ ଶରୀର ମାତ୍ର ୩.୩ ମିଲିମିଟର ଲମ୍ବ ।



## କୁନି ବାଦୁଡ଼ି

# ଆଖି ଫେରିଯାଏ ବାରବାର...
# ଦେଖି ଚମକ ସୁପର ରିନ୍ ର !






**ସୁପର ରିନ୍ ର ଶୁଭ୍ରତାର ଚମକ ଅନେକ ବେଶୀ**